# *INDIRA GANDHI* (Biography)

*By* **Mr. KRUTTIBAS NAYAK**, M. A.

*Publisher* : **Ameshishu Publications,**
*Jeypore Irrigation Colony*
Dist : Koraput

*Printed at* : **Swadheen Press**, Berhampur

*Price* **Rs. 3-00**

*Ist Edition* : **Utkal Dibas—1985**

# ଇନ୍ଦିରା ଗାନ୍ଧୀ (ଜୀବନୀ)

ଲେଖକ : ଶ୍ରୀ କୃତ୍ତିବାସ ନାୟକ, ଏମ୍. ଏ.

ପ୍ରକାଶକ : ଆମେଶିଶୁ ପ୍ରକାଶନୀ,
ଜୟପୁର ଜଳସେଚନ କଲୋନୀ
ଜି : କୋରାପୁଟ

ମୁଦ୍ରକ ସ୍ୱାଧୀନ ପ୍ରେସ୍, ବ୍ରହ୍ମପୁର-୧

ମୂଲ୍ୟ : ଟ ୩-୦୦

ପ୍ରଥମ ପ୍ରକାଶ : ଉତ୍କଳ ଦିବସ—୧୯୮୫

# ନିଜ କଥା

ବିଶ୍ୱର ଶ୍ରେଷ୍ଠ ମହିଳା ତଥା, ଏହି ଶତାବ୍ଦୀର ସର୍ବଶ୍ରେଷ୍ଠ ଜନପ୍ରିୟ ନେତ୍ରୀ ୰ ଇନ୍ଦିରା ଗାନ୍ଧୀଙ୍କ ହତ୍ୟା; ୧୯୮୪ ମସିହାର ଶ୍ରେଷ୍ଠ ଘଟଣା । ଶିଖି-ମନାଇ ବିଶ୍ୱାସଘାତକତା କରି ଯେଉଁ କଳଙ୍କମୟ ଇତିହାସ ସୃଷ୍ଟି କରିଥିଲେ, ବିୟନ୍ତ ଏବଂ ସତବନ୍ତ ଦୁହେଁ ତାର କେବଳ ପୁନରାବୃତ୍ତି କରିଛନ୍ତି । ଅଣ୍ଟି ଛୁରି ତଣ୍ଟି କାଟିଲେ, ଘର ଢେଙ୍କି କୁମ୍ଭୀର ସାଜିଲେ କିମ୍ବା ରକ୍ଷକ ଭକ୍ଷକ ହେଲେ ତାଙ୍କ ହାତରୁ ରକ୍ଷା ପାଇବା ସହଜ ନୁହେଁ ।

ଭାରତ ଉପରେ ୧୯୪୮ ମସିହା ଜାନୁୟାରୀ ୩୦ ତାରିଖରେ ଏହିପରି ଗୋଟିଏ ଦୁର୍ଦ୍ଦିନ ଆସିଥିଲା । ଜାତିର ପିତା ମହାତ୍ମାଗାନ୍ଧୀଙ୍କ ହତ୍ୟାରେ ବିଶ୍ୱବାସୀ ସ୍ତବ୍ଧ ହୋଇ ଯାଇଥିଲେ । ସଂକୀର୍ଣ୍ଣମନା ଦୁଇଜଣ ଦେହରକ୍ଷୀ ଯେଉଁଭଳି କାପୁରୁଷୋଚିତ ଭାବେ ଇନ୍ଦିରା ଗାନ୍ଧୀଙ୍କୁ ହତ୍ୟା କଲେ, ତାର ତୁଳନା ନାହିଁ । ୧୯୮୪ ଅକ୍ଟୋବର ୩୧ ତାରିଖ ଭାରତବର୍ଷ ପାଇଁ ଥିଲା ଆଉ ଏକ ଦୁର୍ଦ୍ଦିନ । ଇନ୍ଦିରା ଆଜି ନାହାନ୍ତି, ସେ କଥା କଳ୍ପନା କରିହୁଏ ନାହିଁ । ତାଙ୍କର ମୃତ୍ୟୁରେ ପ୍ରତ୍ୟେକ ଭାରତୀୟ ମନେ କରୁଛନ୍ତି, ସତେ ଯେପରି ତାଙ୍କ ପରିବାରର ଜଣେ ସଦସ୍ୟ ଆଜି ମୃତ୍ୟୁ ମୁଖରେ ପଡ଼ିଛି । ଧନ୍ୟ ଇନ୍ଦିରା ଗାନ୍ଧୀ ! ଯିଏ ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ଦେଶ ପାଇଁ ଲାଗି ରହିଥିଲେ । ତାଙ୍କର ଜୀବନୀ କିଭଳି କର୍ମବହୁଳ ଓ ଦୀର୍ଘ, ତାହା କେହି କେବେ ସମ୍ପୂର୍ଣ୍ଣ କରି ନପାରେ । ତାଙ୍କର ଦୀର୍ଘ ଜୀବନୀରୁ ପାଠକମାନଙ୍କୁ ସାମାନ୍ୟ କିଛି ଜଣାଇବାର ଆଶା କରୁଛି ମାତ୍ର । ଇତି ।

ବିନୀତ ଲେଖକ—କୃତ୍ତିବାସ ନାୟକ

## କୃତ୍ତିବାସ ନାୟକଙ୍କର ଆଉ ଏକେଟୋଟି ଜନପ୍ରିୟ ପୁସ୍ତକ

- **ଜ୍ଞାନ ସଂଗ୍ରହ** :— ଟ ୬-୦୦ (ଷଷ୍ଠ ସଂସ୍କରଣ)
  ସାଧାରଣ ଜ୍ଞାନ ପାଇଁ ଅସାଧାରଣ ପୁସ୍ତକ

- **ଉତ୍କଳ ଦର୍ପଣ** :— ଟ ୪-୫୦ (ଦ୍ୱିତୀୟ ସଂସ୍କରଣ)
  ସମ୍ପୂର୍ଣ୍ଣ ଉତ୍କଳର ସଂକ୍ଷିପ୍ତ ଚିତ୍ର

- **ସର୍ବଜ୍ଞ ମାନବ** :— ଟ ୩-୦୦ (ପୁରସ୍କୃତ)
  ପିଲାଙ୍କ ବିଜ୍ଞାନ ଉପନ୍ୟାସ

- **ଯିଏ ରକ୍ତ ଦେଲେ ଆମର ପାଇଁ** — ଟ ୨-୫୦
  ଅଜଣା ଶହୀଦଙ୍କର ଅପୂର୍ବ କାହାଣୀ

- **ବଢ଼ିଆ ମଜା** :— ଟ ୨-୦୦ (୨ୟ ସଂସ୍କରଣ)
  ହାସ୍ୟରସ ଭରା ଗାଉଁଲି ଗପ

- **ପଞ୍ଚାମୃତ** :— ଟ ୨-୦୦ (ନୂତନ)
  ପିଲାଙ୍କ ପାଇଁ ଗପ ବହି

ଯୋଗାଯୋଗ—ସମ୍ପାଦକ : ଶିଶୁ ରାଇଜ
ଜୟପୁର-୪, କୋରାପୁଟ

## ବଂଶ ପରିଚୟ

ଇନ୍ଦିରା ଗାନ୍ଧୀ ନେହେରୁ ପରିବାରରେ ଜନ୍ମଗ୍ରହଣ କରିଥିଲେ । ଦିଲ୍ଲୀକୁ ଆସିବା ପୂର୍ବରୁ ଏହି ପରିବାରର ମୂଳ ନାମ ଥିଲା କୌଲ । 'କୌଲ୍' କାଶ୍ମୀରର ଏକ ସମ୍ଭ୍ରାନ୍ତ ବ୍ରାହ୍ମଣ ଗୋଷ୍ଠୀର ଥିଲେ । ମୋଗଲ ବାଦଶାହା ଏହି ପରିବାରକୁ ଆଣି ଦିଲ୍ଲୀ ନହରର ପାଖରେ ରଖାଇ ଥିଲେ । କିଛିଦିନ ପରେ ଏହି ବ୍ରାହ୍ମଣ ପରିବାରଟି ଏଠାରେ ସ୍ଥାୟୀ ବାସିନ୍ଦା ହୋଇଗଲେ । କୌଲ୍ ପରିବାର ନୂତନ କରି ଦିଲ୍ଲୀକୁ ଆସିଥିବାରୁ ସ୍ଥାନୀୟ ଲୋକେ ତାଙ୍କ ସହ ପରିଚିତ ନଥିଲେ । ସେମାନେ ନହରକୁ ଲାଗି ରହୁଥିବାରୁ ସମ୍ଭବତଃ କୌଲ୍ ପରିବାରକୁ ନହରୁ ବା ପରେ ପରେ ନେହେରୁ ବଂଶ ବୋଲି କହିବାରେ ଲାଗିଲେ । ଏହି କୌଲ୍ ପରିବାରଟି ଦିଲ୍ଲୀ ଲୋକଙ୍କ ପାଖରେ ନେହେରୁ ପରିବାର ଭାବେ ସୁପରିଚିତ ହୋଇଗଲେ ।

ଇଂରେଜମାନଙ୍କର ଆଧିପତ୍ୟ ବୃଦ୍ଧି ପାଇବାରୁ ଦିଲ୍ଲୀରେ ଘୋର ବଡ଼ ବିଶୃଙ୍ଖଳା ଲାଗି ରହିଥାଏ । ୧୮୫୭ ମସିହାର ସିପାହୀ ବିଦ୍ରୋହ ସମୟରେ ଇଂରେଜମାନେ ଦିଲ୍ଲୀରେ ରହିବାକୁ ବିପଦ ମନେ କଲେ ।

ନେହେରୁ ପରିବାରର ଲୋକେ ଗୋରା, ଲମ୍ବା ଓ ଦେଖିବାକୁ ଇଂରେଜମାନଙ୍କ ପରି ଥିବାରୁ, ଯେ କୌଣସି ସମୟରେ ତାଙ୍କ ଉପରେ ଆକ୍ରମଣ ହେବାର ସମ୍ଭାବନା ଥାଏ ।

ତେଣୁ ଏହି ପରିବାରକୁ ଦିଲ୍ଲୀରେ ରହିବା ମଧ୍ୟ କଷ୍ଟକର ହୋଇ ପଡ଼ିଲା । ତେଣେ ଏହି ପରିବାରର ସମସ୍ତେ ମିଶି ବଳଦ-ଗାଡ଼ିରେ ବସି ଲୁଚି ଆଗ୍ରା ପଳାଇଗଲେ । ଆଗ୍ରାରେ ମଧ୍ୟ ସେମାନେ ଶାନ୍ତିରେ ରହି ପାରିଲେ ନାହିଁ । ନେହେରୁ ପରିବାରର ମୁଖ୍ୟ ଗଙ୍ଗାଧର ନେହେରୁଙ୍କ ମୃତ୍ୟୁର ତିନିମାସ ପରେ ପଣ୍ଡିତ ମୋତିଲାଲଙ୍କର ଜନ୍ମ ହୋଇଥିଲା । ସେହି ସମୟ ଥିଲା ନେହେରୁ ପରିବାର ପାଇଁ ଏକ ଚରମ ଦୁଃଖର ସମୟ । ଶିଶୁ ମୋତିଲାଲ ଆଗ୍ରାରେ ଥାଇ ପ୍ରାଥମିକ ଶିକ୍ଷା ଆରମ୍ଭ କରିଥିଲେ । ବହୁ ଦୁଃଖକଷ୍ଟ ସହି ସେ ଓକିଲାତି ପାସ୍ କଲେ । ଦୁବଘାସ ପଥର ତଳୁ ମୁଣ୍ଡ ଟେକି ଉଠିଲା ପରି ବୁଦ୍ଧିସମ୍ପନ୍ନ ବ୍ୟକ୍ତି ସମସ୍ତ ଦୁଃଖ, ଅଭାବ, ଅସୁବିଧାକୁ ପଛକୁ ପକାଇ ନିଜ ଲକ୍ଷ୍ୟ ପଥରେ ଆଗେଇ ଚାଲନ୍ତି । ଓକିଲାତି ପାସ୍ କରି ମୋତିଲାଲ ଆଇନ୍ ବ୍ୟବସାୟରେ ମନ ଦେଲେ । ଆଗ୍ରା ସେତେବେଳେ ଆଜିକାଲିକା ପରି ବଡ଼ ସହର ନଥିଲା, ମୋତିଲାଲ ଥିଲେ ଉଚ୍ଚାଭିଳାଷୀ ଓ ପ୍ରତିଭାସମ୍ପନ୍ନ ବ୍ୟକ୍ତି । ସେ ଆଗ୍ରାରେ ଓକିଲାତି କରିବା ଅପେକ୍ଷା ଏଲାହାବାଦ ହାଇକୋର୍ଟରେ ଯାଇ ଓକିଲାତି କରିବାକୁ ପସନ୍ଦ କଲେ । ମଣିଷର ଭାଗ୍ୟ ଅନୁକୂଳ ଥିଲେ, ସବୁ ବିପଦ ଆଡ଼େଇ ହୋଇପଡ଼େ । ଭାଗ୍ୟଲକ୍ଷ୍ମୀ, ଧନଲକ୍ଷ୍ମୀ ଆସି କାନ୍ଧରେ ବସନ୍ତି । ପିତାର ମୁଖ ଦେଖି ନଥିବା ଦୁଃଖୀ ମୋତିଲାଲଙ୍କର ଭାଗ୍ୟର ଅନୁକୂଳ ହେଲା, ଲକ୍ଷ୍ମୀ ସହାୟ ହେଲେ ; ତାଙ୍କର ଓକିଲାତି ଆଇନ ବ୍ୟବସାୟ ଏଲାହାବାଦରେ ଭଲ ଚାଲିଲା, ଅଳ୍ପଦିନ ମଧ୍ୟରେ ସେ ଜଣେ ବିଖ୍ୟାତ ଓକିଲ ଭାବେ ସୁପରିଚିତ ହୋଇଗଲେ । ତାଙ୍କ ଯୁକ୍ତି ନିକଟରେ ବଡ଼ ବଡ଼ ଓକିଲମାନେ ହାର ମାନିଲେ । ଇଂରେଜ ଓକିଲମାନେ

ମୋତିଲାଲଙ୍କ ତର୍କ ଦେଖି ଚମତ୍କୃତ ହୋଇଗଲେ । ସେ ଥିଲେ ପ୍ରକୃତ ସତ୍ୟ ଓ ନ୍ୟାୟର ପୂଜାରୀ । ଯୁଗେ ଯୁଗେ ସତ୍ୟର ଜୟ, ଏଥିରେ ତାଙ୍କର ଆତ୍ମବିଶ୍ୱାସ ଥିଲା ।

ମୋତିଲାଲ ଅଳ୍ପଦିନ ମଧ୍ୟରେ ବହୁତଗୁଡ଼ିଏ ମକଦ୍ଦମାରେ ଜୟଲାଭ ସଙ୍ଗେ ଅଜସ୍ର ଅର୍ଥ ଉପାର୍ଜନ କଲେ । ପ୍ରଥମେ ସେ ନିଜର ପୁରୁଣା ଘରୋଇ ଘରଟିକୁ ବିକି ଦେଇ ଏକ ସୁନ୍ଦର ଅଟ୍ଟାଳିକା ଏଲାହାବାଦଠାରେ କିଣିଲେ । ଏହାର ନାମ ରଖିଲେ, "ଆନନ୍ଦ ଭବନ" । ଏହି ଆନନ୍ଦ ଭବନ ପରବର୍ତ୍ତୀ କାଳରେ ଏକ ଐତିହାସିକ ପ୍ରାସାଦ ଭାବେ ପ୍ରସିଦ୍ଧି ଲାଭ କରିଛି । ଜଣେ ବିଖ୍ୟାତ ଆଇନ ବ୍ୟବସାୟୀଙ୍କ ବାସଗୃହ ଭାବେ ଆନନ୍ଦ ଭବନର ସୁନାମ ଥିଲା, ଯେତେବେଳେ ପଣ୍ଡିତ ମୋତିଲାଲ ଏହି ବିରାଟ ଅଟ୍ଟାଳିକା ଜାତୀୟ କଂଗ୍ରେସକୁ ଦାନ କରିଦେଲେ, ତାହା ଭାରତର ଏକ ରାଜନୈତିକ କେନ୍ଦ୍ରସ୍ଥଳୀ ଭାବେ ପ୍ରସିଦ୍ଧି ଲାଭ କଲା ।

ମୋତିଲାଲଙ୍କର ଧର୍ମପତ୍ନୀ ସ୍ୱରୂପାରାଣୀଙ୍କ କୋଳରେ ୧୪ ନଭେମ୍ବର ୧୮୮୯ ମସିହାରେ ଏହି ଆନନ୍ଦ ଭବନରେ ପଣ୍ଡିତ ଜବାହରଲାଲଙ୍କର ଜନ୍ମ ହେଲା । ସେତେବେଳେ ମୋତିଲାଲ ପାଶ୍ଚାତ୍ୟ ସଭ୍ୟତାର ବଶବର୍ତ୍ତୀ ହୋଇ ରାଜକୀୟ ଢଙ୍ଗରେ ଚଳୁଥାନ୍ତି । ଯେ କୌଣସି ଲୋକ ମୋତିଲାଲଙ୍କ ଚାଲିଚଳନ, ଢଙ୍ଗରଙ୍ଗ ଓ ପୋଷାକ, ପରିଚ୍ଛଦ ଦେଖି, ତାଙ୍କୁ ଜଣେ ଇଂରେଜ ସାହେବ ବୋଲି ମନେ କରୁଥିଲେ । ଶିଶୁ ଜବାହରଙ୍କ ପ୍ରାଥମିକ ଶିକ୍ଷା ପାଇଁ ମୋତିଲାଲ ଜଣେ ଭଲ ଇଂରେଜ ଶିକ୍ଷକଙ୍କୁ ନିଯୁକ୍ତ କରିଦେଲେ । କିନ୍ତୁ ନିଜର ସଭ୍ୟତା, ପରମ୍ପରାକୁ ଯେପରି ଶିଶୁ ଜବାହର ଜାଣିପାରିବ, ସେଥିପାଇଁ

ସ୍ୱତନ୍ତ୍ର ଯତ୍ନ କରୁଥିଲେ । ହିନ୍ଦୁ ବ୍ରାହ୍ମଣ ପରିବାରରେ ଯେପରି ବ୍ରତ ବା ଉପନୟନ କରାଯାଏ, ବୈଦିକ ମତରେ ବ୍ରହ୍ମଚାରୀ ବେଶ ହୋଇ ଭିକ୍ଷାଥାଳ ଧରି ଭିକ୍ଷା ମାଗିବାକୁ ପଡ଼େ । ସେସବୁ ପଣ୍ଡିତ ମୋତିଲାଲ ନିଜ କିଶୋର ପୁତ୍ର ଜବାହରଙ୍କ ପାଇଁ କରିଥିଲେ । ଏସବୁ ସଂସ୍କାର ହେଲେ ବି ନିଜସ୍ୱ ପରମ୍ପରା ଏକଥା ସେ ଭୁଲି ନଥିଲେ ।

ଜବାହର ଜଣେ ଆଧୁନିକ ଶିକ୍ଷାପ୍ରାପ୍ତ, ସଦ୍‌ଗୁଣ ସମ୍ପନ୍ନ ବ୍ୟକ୍ତି ହେଉ । ପାଶ୍ଚାତ୍ୟ ସଭ୍ୟତା ସହ ପରିଚିତ ହେବା ସଙ୍ଗେ ସଙ୍ଗେ ନିଜ ଦେଶର ସଭ୍ୟତା, ସଂସ୍କୃତି ଓ ପରମ୍ପରା ସହ ନିବିଡ଼ ସମ୍ପର୍କ ରଖୁ, ଏ କଥା ମୋତିଲାଲ ସବୁବେଳେ ଚାହୁଁଥିଲେ । ତାଙ୍କର ଇଚ୍ଛା ଥିଲା—ଜବାହରଙ୍କର ହୃଦୟ ହେଉ ଖାଣ୍ଟି ଭାରତୀୟ ।

ଉଚ୍ଚଶିକ୍ଷା ପାଇଁ ଜବାହରଙ୍କୁ ଲଣ୍ଡନର ହେରୋ ବିଦ୍ୟାଳୟରେ ଭର୍ତ୍ତି କରାଗଲା । ଏଠାରେ କେବଳ ଧନୀ ନେତା ଓ ବ୍ରିଟେନ୍ ରାଜକୁମାର ପାଠ ପଢ଼ିବାର ସୁଯୋଗ ପାଆନ୍ତି । ସେଠାରେ ସେ କୃତିତ୍ୱ ସହିତ ବାରିଷ୍ଟରୀ ପାସ କରି ଭାରତକୁ ଫେରିଲେ ।

କେତେକ ମହାନ୍ ବ୍ୟକ୍ତି ଥାଆନ୍ତି, ସେମାନେ ନିଜକୁ ଏକ ଅନୁଷ୍ଠାନ ପରି ଗଢ଼ି ନିଅନ୍ତି । ସେହିପରି ଜବାହରଲାଲ ନିଜକୁ କେବଳ ଜଣେ ବ୍ୟକ୍ତି କରି ରଖିବାକୁ ଇଚ୍ଛା କଲେ ନାହିଁ । ସମସ୍ତେ ଯାହା ଆଶା କରୁଥିଲେ, ଜବାହର ଜଣେ ପିତାଙ୍କ ପରି ବିଖ୍ୟାତ ଓକିଲ ହେବେ, ଅଜସ୍ର ପଇସା ରୋଜଗାର କରିବେ, ତାହା ସଫଳ ହେଲା ନାହିଁ ।

ନେହାରୁଲାଲ ବାରିଷ୍ଟରୀ ପାସ୍ କରି ଭାରତୀୟ ଯୁବ ସମାଜ, ଛାତ୍ର ସମାଜ, କୃଷକ-ମଜଦୁର ସମାଜ ମଧ୍ୟରେ ଏପରି ଏକ ଜାଗରଣ ସୃଷ୍ଟି କଲେ, ସମସ୍ତେ ଜବାହରଙ୍କୁ ଆଦର୍ଶଭାବେ ଗ୍ରହଣ କରିନେଲେ । ତାଙ୍କୁ ନିଜର ନେତା ମନେ କଲେ । ସମସ୍ତ ଦେଶବାସୀ ଭାଇ ଭାଇ, ଆମେ ଗୋଟିଏ ଜାତି; ସଂସାରରେ ଶାନ୍ତି ପ୍ରତିଷ୍ଠା କରିବା ସମସ୍ତଙ୍କର କର୍ତ୍ତବ୍ୟ ଏ ବାଣୀ ଜବାହର ପ୍ରଚାର କଲେ ।

ଅଳ୍ପଦିନ ମଧ୍ୟରେ ସେ ଶିଶୁମାନଙ୍କର ବନ୍ଧୁ, ବଡ଼ମାନଙ୍କର ସ୍ନେହୀ, ସ୍ୱାଧୀନତାପ୍ରେମୀମାନଙ୍କର ଆଶାର ଆଲୋକସ୍ତମ୍ଭ ଭାବରେ ପରିଚିତ ହେଲେ ।

ଭାରତର ଜନତା ତାଙ୍କୁ ନିଜର ନେତାଭାବେ ଗ୍ରହଣ କରିନେଲେ ।

ଜାତିର ପିତା ମହାତ୍ମାଗାନ୍ଧୀଙ୍କ ସହ ଏକମତ ହୋଇ ଅହିଂସା ଯୁଦ୍ଧରେ ଭାରତକୁ ବିଦେଶୀ ହାତରୁ ଛଡ଼ାଇ ଆଣିବାକୁ ଅଣ୍ଟାଭିଡ଼ି ଛିଡ଼ା ହେଲେ । ଚତୁର ଇଂରେଜଙ୍କ ଠାରୁ ସ୍ୱାଧୀନତା ଫେରାଇ ଆଣିବା ଏତେ ସହଜସାଧ୍ୟ ବ୍ୟାପାର ନଥିଲା ।

କଥା କଥାକେ ପୁଲିସ ଜୁଲମ୍, ଜେଲଦଣ୍ଡ । ପଣ୍ଡିତ ନେହେରୁ ଜାଣି ଜାଣି ଫୁଲଶେଯକୁ ତ୍ୟାଗ କରି କଣ୍ଟକମୟ ପଥକୁ ବାଛି ନେଇଥିଲେ । ଭାରତର ଜନତାଙ୍କ ଆଶା-ଆକାଂକ୍ଷାକୁ ପୂରଣ କରିବା ପାଇଁ ସେ ଜୀବନ ଶପଥ ନେଇଥିବାରୁ ଦୁଃଖକଷ୍ଟକୁ ଭ୍ରୂକ୍ଷେପ ନକରି ନିଜ କର୍ମପଥରେ ଆଗେଇ ଚାଲିଲେ ।

ଭାରତକୁ ସ୍ୱାଧୀନ କରିବା ପାଇଁ ଯେଉଁସବୁ ମହତ୍ତ୍ୱପୂର୍ଣ୍ଣ ଘଟଣା ଘଟିଗଲା, ଯଥା—ଭାରତ ଛାଡ଼ ଆନ୍ଦୋଳନ, ଅନଶନ, ଧର୍ମଘଟ ଓ କର ବା ମର ନୀତି ଏ ସବୁରେ ମହାତ୍ମାଗାନ୍ଧୀଙ୍କ ସହ ପଣ୍ଡିତ ନେହେରୁ ଅତି ନିବିଡ଼ଭାବେ ସମ୍ପୃକ୍ତ ଥିଲେ ।

ସ୍ୱାଧୀନତା ଆନ୍ଦୋଳନର ତୀବ୍ରତା ସହ ପଣ୍ଡିତ ନେହେରୁଙ୍କ ସୁନାମ ସାରା ଭାରତରେ ବିଚ୍ଛୁରିତ ହୋଇ ପଡ଼ୁଥାଏ ।

ଦ୍ୱିତୀୟ ବିଶ୍ୱଯୁଦ୍ଧର ଅବସାନ ପରେ ପରେ ଇଂରେଜମାନେ ଭାରତକୁ ସ୍ୱାଧୀନତା ଦେବାକୁ ସ୍ଥିର କଲେ । ୧୯୪୬ ସେପ୍ଟେମ୍ବର ମାସରେ ଦେଶୀୟ ସରକାରଙ୍କ ସ୍ଥାପନା କଲେ । ନବଭାରତ ଯୁଗର ସୃଷ୍ଟି ହେଲା ।

ଏହି ନବଭାରତର ନେତା ଭାବେ ପଣ୍ଡିତ ନେହେରୁ ଭାରତର ପ୍ରଥମ ପ୍ରଧାନମନ୍ତ୍ରୀ ଭାବେ ଦାୟିତ୍ୱ ଗ୍ରହଣ କଲେ ।

ମହାତ୍ମା ଗାନ୍ଧୀଙ୍କ ନେତୃତ୍ୱରେ ଭାରତ ସ୍ୱାଧୀନତା ଲାଭ କଲା ସତ, କିନ୍ତୁ ଏହି ନବଭାରତକୁ ଗଠନ କରିବାର ଦାୟିତ୍ୱ ରହିଲା ପଣ୍ଡିତ ନେହେରୁଙ୍କ ଉପରେ । ସେ ମହାତ୍ମାଗାନ୍ଧୀଙ୍କ ଚିନ୍ତାଧାରାକୁ ରୂପାୟିତ କରି ଭାରତରେ ରାମରାଜ୍ୟ ପ୍ରତିଷ୍ଠା କରିବାକୁ ସ୍ଥିର କଲେ ।

ଭାରତ ଯେପରି ବିଶ୍ୱରେ ନିଜ ସମ୍ମାନ ବଜାୟ ରଖିପାରିବ, ବିଶ୍ୱର ନେତୃତ୍ୱ ନେଇପାରିବ ; ସେଥିପାଇଁ ସେ

ଅନ୍ତରାଷ୍ଟ୍ରୀୟ ସମସ୍ୟା ଉପରେ ଚିନ୍ତା କରିବାରେ ଲାଗି ପଡ଼ିଲେ । ଗୋଷ୍ଠୀ ନିରପେକ୍ଷ ଆନ୍ଦୋଳନ, ବିଶ୍ୱଶାନ୍ତି ପ୍ରତିଷ୍ଠାରେ ଲାଗି ପଡ଼ିଲେ ।

ଭାରତ ସ୍ୱାଧୀନତା ପ୍ରାପ୍ତି ପର ଠାରୁ ୨୭ ମେ ୧୯୬୪ ପର୍ଯ୍ୟନ୍ତ ଦୀର୍ଘ ୧୮ ବର୍ଷ କାଳ ସେ ଦେଶର ନେତା ହିସାବରେ, ପ୍ରଧାନମନ୍ତ୍ରୀ ପଦରେ ଥାଇ ଦେଶ ଗଠନ କାର୍ଯ୍ୟରେ ଲାଗି ରହିଲେ ।

ଶିଳ୍ପ, ବିଜ୍ଞାନ ଓ କାରିଗରୀ କ୍ଷେତ୍ରରେ ଭାରତକୁ ସ୍ୱାବଲମ୍ବୀ କରାଇବା ପାଇଁ ସେ ଦୃଢ଼ ପଦକ୍ଷେପ ନେଲେ ।

ବିଶ୍ୱଶାନ୍ତି, ସଙ୍ଗୀତ, ବାଣିଜ୍ୟ, ମୈତ୍ରୀ, କଳା, ବିଜ୍ଞାନ ସମସ୍ତ କ୍ଷେତ୍ରରେ ଭାରତ ବିଶ୍ୱ ଦରବାରରେ ପରିଚିତ ହୋଇ ନିଜ ଆସନ ସୁଦୃଢ଼ କଲା ।

ପଣ୍ଡିତ ନେହେରୁଙ୍କ ଜୀବନୀ ଅତିବ ଦୀର୍ଘ । ଯାହାକୁ ବର୍ଣ୍ଣନା କରିବା ପାଇଁ କେତେଖଣ୍ଡ ସ୍ୱତନ୍ତ୍ର ପୁସ୍ତକ ରଚିତ ହୋଇଛି ।

ନେହେରୁ ଭାରତରେ ଏପରି ଏକ ଆସନ ପାଇଥିଲେ, ତାଙ୍କର ସୁଯୋଗ୍ୟ ଅଧିକାରୀ ହୋଇ ଦେଶକୁ କିଏ ଚଳାଇବ, ଏକଥା ସମସ୍ତଙ୍କ ପାଇଁ ଏକ ଚିନ୍ତାର ବିଷୟ ଥିଲା ।

କୌଣସି ଏକ କାର୍ଯ୍ୟ ହାତକୁ ନେଲେ, ସେଥିରେ ବହୁ ସମସ୍ୟା ସୃଷ୍ଟି ହୁଏ । କେତେକ ତା'ର ବିରୋଧ କରିବା ମଧ୍ୟ

ସ୍ୱାଭାବିକ । ରାମ ହୁଅନ୍ତୁ କିମ୍ବା ଯୀଶୁ ହୁଅନ୍ତୁ ଯେ କୌଣସି ମହାପୁରୁଷଙ୍କ ପ୍ରଦର୍ଶିତ ପଥକୁ କେତେକ ନାପସନ୍ଦ କରିଥାନ୍ତି । ପଣ୍ଡିତ ନେହେରୁ ଯାହା କରୁଥିଲେ, ତା'ର ବିରୋଧ କରିବାକୁ ମଧ୍ୟ ଲୋକେ କମ୍ ନଥିଲେ ।

ନେହେରୁ ନବଭାରତର ନିର୍ମାତା ଭାବେ ବିଶ୍ବରେ ବିଖ୍ୟାତ ହୋଇଗଲେ ।

—:0:—

## ଇନ୍ଦିରାଙ୍କ ଜନ୍ମ

୧୯୧୭ ମସିହା ବିଶ୍ୱ ପାଇଁ ଥିଲା ଯେପରି ମହତ୍ତ୍ୱପୂର୍ଣ୍ଣ ସେହିପରି ଗୁରୁତ୍ୱପୂର୍ଣ୍ଣ ବର୍ଷ । ରୁଷ୍ ବିପ୍ଳବ ପରେ ପରେ ସୋଭିଏତ୍ ଦେଶ ଶାସନରେ ବିରାଟ ପରିବର୍ତ୍ତନ ଘଟିଲା । ଏହି ସମୟରେ ଭାରତ ଭୂଇଁରେ ସ୍ୱାଧୀନତା ଆନ୍ଦୋଳନର କିଶୋର ଅବସ୍ଥା । ମହାତ୍ମାଗାନ୍ଧୀଙ୍କ ନେତୃତ୍ୱରେ ସାରା ଦେଶରେ ଇଂରେଜ ଶାସନ ବିରୁଦ୍ଧରେ ଆନ୍ଦୋଳନ ତେଜି ଉଠୁଥାଏ ।

ଏହିପରି ଏକ ସନ୍ଧିକ୍ଷଣ ମୁହୂର୍ତ୍ତ, ନଭେମ୍ବର ମାସ ୧୯ ତାରିଖରେ ପଣ୍ଡିତ ଜବାହରଲାଲଙ୍କ ଧର୍ମପତ୍ନୀ କମଳାଙ୍କ କୋଳ ମଣ୍ଡନ କଲେ, "ଇନ୍ଦିରା ପ୍ରିୟଦର୍ଶିନୀ ।"

ସ୍ୱାଧୀନତା ଆନ୍ଦୋଳନର ତେଜରେ ଭରା ଜଳ, ବାୟୁ ଗ୍ରହଣ କରି ଶିଶୁ ଇନ୍ଦିରା ହେଲେ ଏକ ସ୍ୱାଧୀନଚେତା କିଶୋରୀ ।

ମନେ ହେଉଥିଲା—ଇନ୍ଦିରା କୌଳିକ ବ୍ରାହ୍ମଣ ପରିବାରରେ ଜନ୍ମଗ୍ରହଣ କରି ପିଲାଟିବେଳୁ ଧାର୍ମିକ, ସହିଷ୍ଣୁତା ଓ ଧର୍ମନିରପେକ୍ଷତା ଶିକ୍ଷା ପାଇ ପାରିଥିଲେ ।

ଐତିହାସିକ ଜାଲିଆନାବାଗ ହତ୍ୟାକାଣ୍ଡ ସମୟରେ ଇନ୍ଦିରା ମାତ୍ର ଦୁଇ ବର୍ଷର ଶିଶୁ । ଏହି ହତ୍ୟାକାଣ୍ଡର ବିଭିଷିକାରେ ସାରା ଦେଶର ଜନତା ସ୍ତବ୍ଧ ହୋଇଗଲେ । ବିଶ୍ୱକବି ରବୀନ୍ଦ୍ରନାଥ ଠାକୁର ତାଙ୍କର ସାର୍ ଉପାଧିକୁ ବର୍ଜନ କଲେ । କେତେ କ'ଣ ଓଲଟପାଲଟ ହୋଇଗଲା ।

ମୋତିଲାଲଙ୍କ ହୃଦୟରେ ଏହି ହତ୍ୟାକାଣ୍ଡ ଏକ ଆଲୋଡ଼ନ ସୃଷ୍ଟି କଲା ।

ଚାରିବର୍ଷ ବୟସରେ ଇନ୍ଦିରା ପଣ୍ଡିତ ମୋତିଲାଲଙ୍କ କୋଳରେ ବସି ଭୁଲ—ଠିକ୍, ଅନ୍ୟାୟ—ନ୍ୟାୟ, ସତ୍ୟ ଓ ମିଥ୍ୟା ବୁଝି ପାରୁଥିଲେ ।

ଛଅବର୍ଷ ବୟସରେ ମହାତ୍ମାଗାନ୍ଧୀଙ୍କ କୋଳରେ ଶିଶୁ ଇନ୍ଦିରା ବସିବାର ସୁଯୋଗ ପାଇଥିଲେ । ମହାତ୍ମାଗାନ୍ଧୀ ଅନଶନ କରି ବସିଲେ, ଶିଶୁ ଇନ୍ଦିରା ବାପୁଜୀଙ୍କ ପାଖେ ପାଖେ ରହୁଥିଲେ ।

'ଆନନ୍ଦ ଭବନ' ସେତେବେଳକୁ ଭାରତର ଏକ ଗୁରୁତ୍ୱପୂର୍ଣ୍ଣ ରାଜନୈତିକ କେନ୍ଦ୍ର ଭାବେ ଗଢ଼ି ଉଠିଥାଏ । ମହାତ୍ମାଗାନ୍ଧୀଙ୍କ ଠାରୁ ଆରମ୍ଭ କରି ବହୁ ବଡ଼ ବଡ଼ କଂଗ୍ରେସ ନେତା ଆନନ୍ଦ ଭବନରେ ଦେଶର ଭବିଷ୍ୟତ ବିଷୟରେ ଆଲୋଚନା କରୁଥାନ୍ତି ।

ଶିଶୁ ଇନ୍ଦିରା ସମସ୍ତ ନେତାଙ୍କ ସହ ମିଶିବାର ଯେପରି ସୁଯୋଗ ପାଉଥିଲେ, ସେହିପରି ଦେଶ ବିଷୟରେ, ସତ୍ୟ-ଅହିଂସା-ନୀତି ଦେଶପ୍ରୀତି ସମ୍ପର୍କରେ ସେମାନଙ୍କର ମହତ୍ତ୍ୱପୂର୍ଣ୍ଣ ଆଲୋଚନା ମାନ ଶୁଣିବାର ସୁଯୋଗ ପାଉଥିଲେ ।

ପରିବେଶ ମଣିଷକୁ ଉଚ୍ଚକୁ ନେବାରେ ବହୁତ ସାହାଯ୍ୟ କରିଥାଏ । ପ୍ରତିଭା ଥିଲେ ଓ ପରିବେଶ ଅନୁକୂଳ ହେଲେ ମଣିଷ ଶୀର୍ଷସ୍ଥାନକୁ ଯିବା କିଛି ଅସମ୍ଭବ ହୁଏ ନାହିଁ ।

ଯେଉଁଭଳି ସମୟରେ ଇନ୍ଦିରା ଜନ୍ମ ହେଲେ, ଯେଉଁ ମହାନ୍ ବ୍ୟକ୍ତି ସଂସ୍ପର୍ଶରେ ଆସିଲେ ଏବଂ ଯେଉଁଭଳି ପରିବେଶରେ ସେ ବଡ଼ ହେଲେ; ତାଙ୍କର ଆତ୍ମା, ହୃଦୟ ଓ ଶରୀର ସେହିପରି ଭାବେ ଗଢ଼ି ଉଠିଲା ।

ସାଇମନ କମିଶନ୍ ବିରୁଦ୍ଧରେ ଲକ୍ଷ ଲକ୍ଷ ଭାରତୀୟଙ୍କ ସମେତ ବହୁ ଜାତୀୟ ନେତା ସ୍ୱର ଉତ୍ତୋଳନ କରିବାରୁ ସେମାନେ ପୁଲିସର ଶିକାର ହେଲେ । ସେମାନଙ୍କ ପ୍ରତି ଅମାନୁଷିକ ଅତ୍ୟାଚାର ଚାଲିଲା । ଶେଷରେ ସେମାନଙ୍କୁ ହତ୍ୟା ମଧ୍ୟ କରାଗଲା । ଏହି ସମୟରେ ଆନନ୍ଦ ଭବନ ହୁଲସ୍ଥୂଳ ହୋଇଗଲା । ୧୯୩୦ ମସିହାରେ ପଣ୍ଡିତ ନେହେରୁଙ୍କ ଅଧ୍ୟକ୍ଷତାରେ ପୂର୍ଣ୍ଣ ସ୍ୱାଧୀନତା ପ୍ରସ୍ତାବ ପାସ୍ କରାଗଲା । ଫଳରେ ପୁଲିସ୍ ଜୁଲମ୍ ଅଧିକ ବୃଦ୍ଧି ହେଲା । ବିଭିନ୍ନ ସ୍ଥାନରେ ଲାଠିମାଡ଼, ଗୁଳିବର୍ଷଣ କରାଗଲା ।

ସେତେବେଳକୁ ଶିଶୁ ଇନ୍ଦିରାଙ୍କ ବୟସ ବାର ବର୍ଷ । ସ୍ୱାଧୀନଚେତା ଇନ୍ଦିରା ନୀରବ ରହିପାରିଲେ ନାହିଁ । ସେ ସବୁ ଦେଖୁଥିଲେ, ସବୁ ବୁଝୁଥିଲେ । ସେ ଯଦି ଜଣେ କଂଗ୍ରେସର ସଭ୍ୟ ହୋଇପାରନ୍ତେ, ତା' ହେଲେ ସେ ମଧ୍ୟ ସ୍ୱାଧୀନତା ଆନ୍ଦୋଳନରେ ଯୋଗ ଦେଇପାରନ୍ତେ । ଏକଥା ଚିନ୍ତା କରି ଦିନେ ସେ କଂଗ୍ରେସର ସଭ୍ୟ ହେବା ପାଇଁ କାର୍ଯ୍ୟାଳୟରେ ଉପସ୍ଥିତ ହେଲେ ।

କଂଗ୍ରେସର ନିୟମ ଅନୁସାରେ ଶିଶୁ ଇନ୍ଦିରା ସଭ୍ୟ ହୋଇ ପାରିଲେ ନାହିଁ ! ମନ ଦୁଃଖରେ କାର୍ଯ୍ୟାଳୟରୁ ଫେରି ଆସିଲେ ସିନା ତାଙ୍କର ମନୋବଳ ଭାଙ୍ଗିଯାଇ ନଥିଲା ।

ଇନ୍ଦିରା ଚୁପ୍ ରହିବା ପରି ପିଲା ନଥିଲେ । ନିଜ ବୟସର କେତେକ ପିଲାଙ୍କୁ ନେଇ ସେ ଏକ ସେନାବାହିନୀ ଗଠନ କଲେ । ଏଥିରେ ସେନାପତି ଭାବରେ ସ୍ୱୟଂ ଇନ୍ଦିରା କାର୍ଯ୍ୟ କଲେ । ଏହି ସେନାବାହିନୀଟି "ବାନର ସେନା" ନାମରେ ବିଖ୍ୟାତ ହେଲା ।

ନେତାମାନେ ଯେପରି ପୋଷାକ ପିନ୍ଧି କର୍ମୀମାନଙ୍କୁ ଭାଷଣ ଦିଅନ୍ତି, ଇନ୍ଦିରା ସେ ସବୁକୁ ଲକ୍ଷ୍ୟ କରି ନିଜ ସେନାମାନଙ୍କୁ ସେହିପରି ଭାଷଣ ଦେଉଥିଲେ । ତାଙ୍କର ମୁଖ୍ୟବାର୍ତ୍ତା ଥିଲା— "ଆଗେଇ ଚାଲ, କଂଗ୍ରେସ ପତାକାକୁ ଉଚ୍ଚା କର । ପୁଲିସ ଜୁଲମକୁ ଡର ନାହିଁ ।"

ମନେହୁଏ, ଇନ୍ଦିରା ଗାନ୍ଧୀ ଏହି ସମୟରୁ 'ସାହସ' ଓ 'ନିଷ୍ଠା' ଶିକ୍ଷା ଲାଭ କରିଥିଲେ ।

ପିଲା ବୟସରୁ ଇନ୍ଦିରା ରାଜନୀତି ପ୍ରତି ଆଗ୍ରହୀ ହୋଇ ପଡ଼ିବାରୁ ଓ ସ୍ୱାଧୀନତା ଆନ୍ଦୋଳନରେ ସାରା ଦେଶବାସୀ ବ୍ୟସ୍ତ ରହିବାରୁ, ଇନ୍ଦିରାଙ୍କର ନିୟମିତ ପାଠପଢ଼ାରେ ବାଧା ସୃଷ୍ଟି ହୋଇଥିଲା । ସେ ଧାରାବାହିକ ଭାବେ ପାଠ ପଢ଼ିବାର ସୁଯୋଗ ପାଇପାରିଲେ ନାହିଁ । ସେ ପୁନାରେ ୩ ବର୍ଷ ନିୟମିତ ଭାବେ ପାଠ ପଢ଼ି, ଶାନ୍ତିନିକେତନରେ ରବୀନ୍ଦ୍ରନାଥ ଠାକୁରଙ୍କ ସାନ୍ନିଧ୍ୟ ଲାଭ କରିଥିଲେ । ଫଳରେ ଇନ୍ଦିରା କଳା-କବିତା ପ୍ରତି ଆକୃଷ୍ଟ ହୋଇଥିଲେ । ଇନ୍ଦିରା ଶାନ୍ତିନିକେତନରେ ୧୯୩୪ ଜୁଲାଇ ଠାରୁ ୧୯୩୫ ଏପ୍ରିଲ ପର୍ଯ୍ୟନ୍ତ ରହି ବିଦ୍ୟାଶିକ୍ଷା ଲାଭ କରିଥିଲେ ।

ଇନ୍ଦିରାଙ୍କୁ ୧୮ ବର୍ଷ ବୟସ ହେଲାବେଳେ ମୋତିଲାଲଙ୍କ ଦେହାନ୍ତ ହୋଇଗଲା । ଏହା ପରେ ପରେ ମାଆ କମଳା ନେହେରୁଙ୍କ ସ୍ୱାସ୍ଥ୍ୟ ମଧ୍ୟ ଖରାପ ଆଡ଼କୁ ଗତି କରୁଥାଏ । ବାରମ୍ବାର ପରିବାରର ସମସ୍ତେ ଜେଲଦଣ୍ଡ ପାଉଥିବାରୁ ତାଙ୍କ ମନରେ ଦୁଶ୍ଚିନ୍ତା ବଢ଼ୁଥାଏ ।

ପକ୍ଷାଘାତ ରୋଗରେ ପୀଡ଼ିତା ମାଆ କମଳା ୧୯୩୬ ଫେବୃୟାରୀରେ ଦେହତ୍ୟାଗ କଲେ ।

ଯୁବାବସ୍ଥାରେ ଇନ୍ଦିରା ନିଜ ବୁଢ଼ା ବାପା ଓ ପରେ ପରେ ମାଆଙ୍କୁ ହରାଇ ଭାଙ୍ଗି ପଡ଼ିଲେ ।

୧୯୩୯ରେ ଉଚ୍ଚଶିକ୍ଷା ପାଇଁ ଇନ୍ଦିରାଙ୍କୁ ବ୍ରିଟେନ୍ ଯିବାକୁ ପଡ଼ିଲା । ବର୍ଷକ ମଧ୍ୟରେ ସେଠାରେ ପ୍ଲୁରିସି ରୋଗରେ ପୀଡ଼ିତ ହୋଇ ଲଣ୍ଡନସ୍ଥ ଡାକ୍ତରଖାନାରେ ଭର୍ତ୍ତି ହେଲେ । ସେ ବେମାରରୁ ସମ୍ପୂର୍ଣ୍ଣ ମୁକ୍ତି ପାଇବା ସମୟରେ ଦ୍ୱିତୀୟ ବିଶ୍ୱଯୁଦ୍ଧ ଆରମ୍ଭ ହୋଇ ଯାଇଥାଏ । ଭାରତକୁ ଫେରିବା ସେତେବେଳେ ବଡ଼ ବିପଦଜନକ ସମୟ ଥିଲା ।

ଇନ୍ଦିରାଙ୍କ ଜିଦ୍ ସେ ଭାରତକୁ ଫେରିବେ । ପିତା ନେହେରୁ ମଧ୍ୟ ତାଙ୍କ କଥା ମାନି ନେଲେ । ସେ ଏକ ସୈନ୍ୟ ଜାହାଜରେ ବସି ଭାରତକୁ ଫେରିବାକୁ ସ୍ଥିର କଲେ । ରାସ୍ତାରେ ଗୋଟିଏ ସପ୍ତାହ ରହିବାକୁ ପଡ଼ିଲା ।

ଦକ୍ଷିଣ ଆଫ୍ରିକାରେ ବାସ କରୁଥିବା ଭାରତୀୟମାନେ ଇନ୍ଦିରାଙ୍କୁ ନିମନ୍ତ୍ରଣ କରି ଡାକି ନେଲେ । ସେଠାରେ ସେ ଫିରୋଜଙ୍କ ସହିତ

ଇଂରେଜ ଶାସକଙ୍କ ଅତ୍ୟାଚାରର କଡ଼ା ସମାଲୋଚନା କରି ସେଠାରୁ ଭାରତ ଫେରି ଆସିଲେ ।

ଯୁବା ଅବସ୍ଥାରେ ବିବାହ ଜୀବନର ଏକ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ । ଭାରତର ଜଣେ ବିଖ୍ୟାତ ନେତା ଜବାହରଲାଲ ନେହେରୁଙ୍କ କନ୍ୟା କୁମାରୀ ଇନ୍ଦିରାଙ୍କ ବିବାହ ବିଷୟରେ ବହୁ ଆଲୋଚନା, ସମାଲୋଚନା ଗାଳିଗୁଲଜ ଶୁଣିବାକୁ ମିଳିବା କିଛି ନୂଆ କଥା ନୁହେଁ ।

କେତେଜଣ ମନେ କରିଥାଆନ୍ତି, ଇନ୍ଦିରା ଜଣେ ନୈଷ୍ଠିକ ବ୍ରାହ୍ମଣ ପରିବାରର କନ୍ୟା, ସେ ଏକ ମୁସଲମାନ ପୁଅ ଫିରୋଜଙ୍କୁ କୌଣସି ଚାପରେ ବା ଅସୁବିଧାରେ ପଡ଼ି ବିବାହ ହୋଇଛନ୍ତି । ଏହି ବିବାହରେ ବାପାଜୀ ନେହେରୁ ସନ୍ତୁଷ୍ଟ ନଥିଲେ । ଏସବୁ କେବଳ ମନଗଢ଼ା ଗୁଜବ ଛଡ଼ା କିଛି ନୁହେଁ । ପ୍ରକୃତ ସତ୍ୟ କଥା ହେଲା—ପଣ୍ଡିତ ନେହେରୁ ବୁଝିଥିଲେ, ମାତୃହୀନା ତାଙ୍କର ଏକମାତ୍ର ଅଲିଅଳି କନ୍ୟା କମ୍ଚିଦନ ଭିତରେ ନିଜ ନିଜ ପସନ୍ଦ ଅନୁସାରେ ବର ଖୋଜି ନେଉ ।

ଭବିଷ୍ୟତ ପରାମର୍ଶ ଅନୁସାରେ ଇନ୍ଦିରା ଅତି ମାତ୍ର ଜଣଙ୍କୁ ନିଜର ପତି ଭାବରେ ନିର୍ବାଚନ କରିନେଲେ । ଏକଥା ସତ୍ୟ ଯେ, ବହୁ ପ୍ରକାର ଲୋକଙ୍କ କଥାରେ ସେ ଭୁଲି ନଯାଇ ନିଜ ପ୍ରତିଜ୍ଞାରେ ଅଟଳ-ଅଟଳ ରହିଥିଲେ ।

୧୯୦୨ ମାର୍ଚ୍ଚ ମାସରେ ଫିରୋଜ ଗାନ୍ଧୀଙ୍କ ସହ ଇନ୍ଦିରାଙ୍କ ବିବାହ କାର୍ଯ୍ୟ ସମ୍ପନ୍ନ ହେଲା ।

ବିବାହର ମାତ୍ର ଛଅ ମାସ ପୂରଣ ନ ହେଉଣୁ ଫିରୋଜଙ୍କ ସହ ଇନ୍ଦିରାଙ୍କୁ ଜେଲ ଯିବାକୁ ପଡ଼ିଲା । କାରଣ ଏମାନେ ଭାରତ ଛାଡ଼ ଆନ୍ଦୋଳନରେ ପ୍ରତ୍ୟକ୍ଷଭାବେ ଅଂଶ ଗ୍ରହଣ କରିଥିଲେ ।

# ଇନ୍ଦିରା ଗାନ୍ଧୀଙ୍କ ଜୀବନର ଦ୍ୱିତୀୟ ପର୍ଯ୍ୟାୟ

୧୯୪୨ରେ ଇନ୍ଦିରାଙ୍କ ବିବାହ ପରଠାରୁ ୧୯୪୭ ପର୍ଯ୍ୟନ୍ତ ଏହି ୫ ବର୍ଷ ଭାରତବର୍ଷ ପାଇଁ ଥିଲା ସ୍ୱାଧୀନତା ଆନ୍ଦୋଳନର ଚରମ ମୁହୂର୍ତ୍ତ । ଏହି ସମୟ ମଧ୍ୟରେ ବହୁ ନେତା ପ୍ରାଣ ଦେଲେ, ଜେଲ ଗଲେ । ଶେଷରେ ଭାରତ ସ୍ୱାଧୀନତା ଲାଭ କଲା, ପଣ୍ଡିତ ନେହେରୁ ହେଲେ ପ୍ରଧାନମନ୍ତ୍ରୀ ।

ପ୍ରଧାନମନ୍ତ୍ରୀ ହେବା ପରେ ପଣ୍ଡିତ ନେହେରୁ ସରକାରୀ ବାସଭବନ 'ତିନ୍ ମୂର୍ତ୍ତି ଭବନ'କୁ ଆସିଗଲେ ।

ଇନ୍ଦିରା ତାଙ୍କର ଦୁଇ ଶିଶୁପୁତ୍ର ରାଜୀବ ଓ ସଞ୍ଜୟଙ୍କୁ ସାଙ୍ଗରେ ଧରି ପିତାଙ୍କ ପାଖରେ ଆସି ରହିଲେ । ସେଠାରେ ଅତିଥିମାନଙ୍କର ଚର୍ଚ୍ଚା ଓ ପିତାଙ୍କୁ ସବୁ କାମରେ ସହଯୋଗ କରିବା ପାଇଁ ତାଙ୍କର ଇଚ୍ଛା ଥିଲା । ସେ ସବୁ ସୁଯୋଗ ମଧ୍ୟ ଇନ୍ଦିରା ପାଇଲେ ।

ପିଲାଟିବେଳୁ ଇନ୍ଦିରାଙ୍କର ରାଜନୀତି ପ୍ରତି ପ୍ରବଳ ଆଗ୍ରହ ଥାଏ । 'ହମ୍ ନେହେରୁ' ପୁସ୍ତକରେ ଲେଖାଅଛି—ଇନ୍ଦିରା ଗାନ୍ଧୀ ଯେତେବେଳେ ୭।୮ ବର୍ଷ ବୟସରେ ହୋଇଥିଲେ, ଲେଖିକା କୃଷ୍ଣା ଦେଖିଛନ୍ତି ଯେ ଇନ୍ଦିରା ନିଜେ ଏକା କଣ ବକର ବକର ହେଉଥାଏ, ମୁଁ ଯାଇ ପଚାରିଲି, "ଏମିତି ଏଠାରେ କଣ କରୁଛ ? ସେ ମୋତେ ଉତ୍ତର ଦେଇ କହିଲେ, "ଜୋନ୍ ଅଫ୍ ଆର୍କ" ହେବା ପାଇଁ ମୁଁ ଅଭ୍ୟାସ କରୁଛି । ମୁଁ ତାଙ୍କରି ପରି ଲୋକମାନଙ୍କର ନେତୃତ୍ୱ ନେବି ।"

ଏକଥା ଚିନ୍ତା କଲେ ଜଣାପଡ଼େ—ଇନ୍ଦିରା ଶିଶୁ ଅବସ୍ଥାରେ ଜଣେ ନେତା ହେବାକୁ ଜୀବନର ଲକ୍ଷ୍ୟ ରଖିଥିଲେ ।

ଭାରତ ସ୍ୱାଧୀନତା ପାଇବା ପୂର୍ବରୁ ଓ ପରେ ଇନ୍ଦିରା ବହୁ ନେତାଙ୍କ ସଙ୍ଗ ମିଶିବାର ସୁଯୋଗ ପାଇଥିଲେ । ପଣ୍ଡିତ ନେହେରୁଙ୍କ ସମସ୍ତ କାର୍ଯ୍ୟକଳାପ ଉପରେ ତୀକ୍ଷ୍ଣ ଦୃଷ୍ଟି ଦେଇ ସମସ୍ତ ସୁବିଧା ଦେଖି ପିତାଙ୍କୁ ପରାମର୍ଶ ମଧ୍ୟ ଦେଉଥିଲେ ।

୧୯୫୨ ମସିହାର ୧ମ ସାଧାରଣ ଲୋକସଭା ନିର୍ବାଚନ କରାଗଲା ।

ଫିରୋଜ ଗାନ୍ଧୀ ଏହି ନିର୍ବାଚନରେ ରାଏବରେଲି ନିର୍ବାଚନ ମଣ୍ଡଳୀରେ ଓ ପଣ୍ଡିତ ନେହେରୁ ଫୁଲପୁର ନିର୍ବାଚନ ମଣ୍ଡଳୀର ପ୍ରାର୍ଥୀ ହୋଇଥାନ୍ତି । ଇନ୍ଦିରା ନିଜର ପିତା ଓ ପତିଙ୍କର ବିଜୟ ପାଇଁ ବହୁ କଷ୍ଟ ସ୍ୱୀକାର କରି ପ୍ରବଳ ପ୍ରଚାର କଲେ । ଫଳରେ ଦୁଇଜଣ ଯାକ ପ୍ରାର୍ଥୀ ବହୁ ସଂଖ୍ୟାରେ ଭୋଟ ପାଇ ଜୟଯୁକ୍ତ ହେଲେ ।

୧୯୫୭ରେ ଦ୍ୱିତୀୟ ସାଧାରଣ ଲୋକସଭା ନିର୍ବାଚନରେ ପୂର୍ବପରି ଇନ୍ଦିରା ଗ୍ରାମ ଗ୍ରାମ ବୁଲି ସାଧାରଣ ଲୋକଙ୍କ ସଙ୍ଗ ମିଶିବାର ସୁଯୋଗ ପାଇଲେ ଓ ନିର୍ବାଚନରେ ପତି ଓ ପିତାଙ୍କୁ ଜୟଯୁକ୍ତ କରାଇଲେ ।

କଂଗ୍ରେସ ସଙ୍ଗ ପିଲାବେଳୁ ଇନ୍ଦିରା ପରିଚିତ ଥିଲେ । କଂଗ୍ରେସକୁ ତ୍ରାଣ କରିବା ପାଇଁ ଇନ୍ଦିରାଙ୍କର ଦାନ, ତ୍ୟାଗରେ

ସନ୍ତୁଷ୍ଟ ହୋଇ ତତ୍‌କାଳୀନ କଂଗ୍ରେସ ଅଧ୍ୟକ୍ଷ ଶ୍ରୀ ଢେବରଭାଇ ଇନ୍ଦିରାଙ୍କୁ କଂଗ୍ରେସ ଦଳର ସଭାପତି ପଦ ପାଇଁ ପ୍ରସ୍ତାବ ଦେଲେ ।

ନେହେରୁ ଏହାର ଦୃଢ଼ ପ୍ରତିବାଦ କଲେ, କାରଣ ନେହେରୁ ଜାଣିଥିଲେ, ସେ ନିଜେ ପ୍ରଧାନମନ୍ତ୍ରୀ ଭାବେ ଦେଶର ନେତୃତ୍ୱ ନେଉଛନ୍ତି । ଯଦି ତାଙ୍କର ଝିଅ ଦଳର ନେତା ବା ଅଧ୍ୟକ୍ଷ ହୁଏ," ତା' ହେଲେ ଲୋକେ କହିବେ କ'ଣ ? ଭାରତ ଶାସନ ଏକ ପରିବାର ଦ୍ୱାରା ପରିଚାଳିତ ହେଉଛି ବୋଲି ଲୋକେ ଅନୁଭବ କରିବେ ।"

ସେତେବେଳର ବୟୋଜ୍ୟେଷ୍ଠ କଂଗ୍ରେସ ନେତା ତଥା ଗୃହମନ୍ତ୍ରୀ ପଣ୍ଡିତ ଗୋବିନ୍ଦ ବଲ୍ଲଭ ପନ୍ଥ ନେହେରୁଙ୍କ ଯୁକ୍ତିକୁ କାଟି ଦେଇଥିଲେ । ଯୋଗ୍ୟତା ଥିବା ଯେ କୌଣସି ଭାରତୀୟଙ୍କୁ କଂଗ୍ରେସର ନେତା ଭାବେ ନିର୍ବାଚିତ କରାଯାଇପାରେ । ଏହି ଯୁକ୍ତିକୁ ଅନ୍ୟ କଂଗ୍ରେସ ନେତାମାନେ ମଧ୍ୟ ମାନିନେଲେ । ଫଳରେ ଜାତୀୟ କଂଗ୍ରେସର ସର୍ବୋଚ୍ଚ ଆସନ ଅଧ୍ୟକ୍ଷ ପଦରେ ଶ୍ରୀମତୀ ଗାନ୍ଧୀ ୧୯୫୯ ମସିହାରେ ଆସୀନ ହେଲେ । ବହୁ ପୁରୁଖା ନେତା ଥାଉ ଥାଉ ଜଣେ ଯୁବା ନାରୀ ଏହି ପଦରେ ଥାଇ ଯେଉଁଭଳି ସମସ୍ୟାଗୁଡ଼ିକର ସମ୍ମୁଖୀନ ହେଲେ, ତାହା ଉଲ୍ଲେଖନୀୟ ।

ଇନ୍ଦିରା ଗାନ୍ଧୀ କଂଗ୍ରେସ ଦଳର ସର୍ବୋଚ୍ଚ ପଦରେ ଥିବା ସମୟରେ ସମସ୍ତ ସମସ୍ୟାର ସମାଧାନ ମୂଳସୂତ୍ର ତାଙ୍କ ହାତରେ ଥିଲା । ଏହି ସମୟ ମଧ୍ୟରେ ଗୁଜରାଟ ଓ ମହାରାଷ୍ଟ୍ରକୁ ସ୍ୱତନ୍ତ୍ର ରାଜ୍ୟ ଭାବେ ଗଠନ ପାଇଁ ପ୍ରବଳ ଆନ୍ଦୋଳନ ଲାଗି ରହିଥାଏ । ସ୍ଥାନେ

ସ୍ଥାନେ ମୃତାହତ ଘଟଣା ମଧ୍ୟ ଘଟୁଥାଏ । ଦୁଇଟି ରାଜ୍ୟ ଅଲଗା ହୋଇଗଲେ, ସମୃଦ୍ଧ ବମ୍ବେ ସହରକୁ କେଉଁ ରାଜ୍ୟ ନେବ, ତାଁ ଉପରେ ବହୁ ଆଲୋଚନା, ସମାଲୋଚନା ଓ ଦାବୀମାନ ଶ୍ରୀମତୀ ଗାନ୍ଧୀଙ୍କ ପାଖରେ ଆସି ପହଞ୍ଚୁଥାଏ ।

ବହୁ ଦିଗରୁ ଚିନ୍ତା କରି ଶେଷରେ ଇନ୍ଦିରା ଗାନ୍ଧୀ ୧୯୬୧ ମସିହାରେ ମହାରାଷ୍ଟ୍ର ଓ ଗୁଜୁରାଟକୁ ସ୍ୱତନ୍ତ୍ର ରାଜ୍ୟଭାବେ ଘୋଷଣା କରିଦେଲେ । ବମ୍ବେ ସହରକୁ ମହାରାଷ୍ଟ୍ରର ରାଜଧାନୀ ଭାବେ ଅବସ୍ଥାପିତ କଲେ । ଗୁଜୁରାଟବାସୀଙ୍କର ଦାବୀକୁ ମଧ୍ୟ ମାନ ନେଲେ ।

ଇନ୍ଦିରା ଗାନ୍ଧୀଙ୍କ ଏହି ଗୁରୁତ୍ୱପୂର୍ଣ୍ଣ ନିଷ୍ପତ୍ତି ଫଳରେ ଗୁଜୁରାଟ ତଥା ମହାରାଷ୍ଟ୍ରର ଜନତା ସନ୍ତୁଷ୍ଟ ହେଲେ । ବହୁ ବଡ଼ ବଡ଼ ନେତା ଇନ୍ଦିରାଙ୍କ ବ୍ୟକ୍ତିତ୍ୱର ଭୂରି ଭୂରି ପ୍ରଶଂସା କଲେ ।

ଇନ୍ଦିରା ଗାନ୍ଧୀ କଂଗ୍ରେସର ଅଧ୍ୟକ୍ଷା ପଦରେ ଥିବା ସମୟରେ ଆଉ ଏକ ଗୁରୁତ୍ୱପୂର୍ଣ୍ଣ ଘଟଣା ଘଟିଲା ।

କେରଳ ରାଜ୍ୟରେ ସେତେବେଳେ ଅଣକଂଗ୍ରେସ ସରକାର ଶାସନ କରୁଥାଏ । ରାଜ୍ୟରେ ପ୍ରବଳ ହିଂସାକାଣ୍ଡ ଅରାଜକତା ଲାଗି ରହିଥାଏ । ସରକାର ଏ ସବୁକୁ ସମ୍ମୁଖୀନ ହେବାର ଅକ୍ଷମ, ଏ କଥା ରାଜ୍ୟପାଳ କଂଗ୍ରେସ ଅଧ୍ୟକ୍ଷା ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କୁ ଜଣାଇଲେ ।

ଇନ୍ଦିରା ଗାନ୍ଧୀଙ୍କ ସୁପାରିଶ ଅନୁସାରେ କେରଳ ରାଜ୍ୟରେ ରାଷ୍ଟ୍ରପତି ଶାସନ ଜାରି ହେଲା । ଏହି ଘଟଣା ୧୯୫୭ ମସିହା ପାଇଁ

ଥିଲା, ଅତି ଗୁରୁତ୍ୱପୂର୍ଣ୍ଣ । ସାରାଦେଶ ଇନ୍ଦିରା ଗାନ୍ଧୀଙ୍କ ଦକ୍ଷତା ଓ ଦୂରଦୃଷ୍ଟିର ପରିଚୟ ପାଇଲେ ।

ଫଳରେ ଇନ୍ଦିରା ଗାନ୍ଧୀ ଅଧିକ ଜନପ୍ରିୟ ହେବାକୁ ଲାଗିଲେ ।

ଭାରତର ସ୍ୱାଧୀନତା ୧୯୬୦ ସେପ୍ଟେମ୍ବର ଦୁଇ ତାରିଖ ଥିଲା ଇନ୍ଦିରା ଗାନ୍ଧୀଙ୍କ ପାଇଁ ଏକ ଅଶୁଭ ଦିନ । ତାଙ୍କର ସ୍ୱାମୀ ତଥା ପାର୍ଲିଆମେଣ୍ଟ ସଭ୍ୟ ଫିରୋଜ ଗାନ୍ଧୀ ଗୁରୁତର ଯନ୍ତ୍ରଣା ଅନୁଭବ କଲେ । ତାଙ୍କୁ ୱେଲିଂଡନ ନର୍ସିଂହୋମ୍‌ରେ ଭର୍ତ୍ତି କରି ଦିଆଗଲା ।

ମୃତ୍ୟୁ ସହିତ ଲଢ଼େଇ କରି ଫିରୋଜ ଗାନ୍ଧୀ ସେପ୍ଟେମ୍ବର ଆଠ ତାରିଖରେ ହାରିଗଲେ ।

ଇନ୍ଦିରାଙ୍କ ହାତରେ ହାତ ରଖି ସେ ଇହଲୀଳା ତ୍ୟାଗ କଲେ ।

ଜଣେ ଭାରତୀୟ ନାରୀ ପାଇଁ ପତିର ସ୍ଥାନ ଅତି ଉଚ୍ଚରେ । ପତି ବିନା ପତ୍ନୀ ଶ୍ରୀହୀନା ହୋଇପଡ଼େ । ତାର ଦୁଃଖର ସୀମା ଟପିଯାଏ । ସବୁ ଶୁଭକାମ ତା' ପାଇଁ ମନା । ସେ ଅମଙ୍ଗଳୀ ହୋଇପଡ଼େ ।

ଇନ୍ଦିରା ପତି ବିୟୋଗରେ ତାଙ୍କର ହୃଦ ବେଦନାକୁ ଚାପି ରଖି ଏକ ପ୍ରକାର ନୀରବ ରହିଗଲେ ।

ଫିରୋଜ ଗାନ୍ଧୀଙ୍କ ମୃତ୍ୟୁ ପରେ ପରେ ନାନା ଗୁଜବ ଉଠିଲା । କେତେକ କୁତ୍ସାରଟନାକାରୀ ଅପପ୍ରଚାର କଲେ, ଇନ୍ଦିରା ଗାନ୍ଧୀ ନିଜ ପତିକୁ ହତ୍ୟା କରିଛନ୍ତି । ଏହାପରି ଆହୁରି କେତେ ମିଥ୍ୟା ଗାଳୁଗପ ଲାଗି ରହିଲା ।

ଏକମାତ୍ର ଅନ୍ତରଙ୍ଗ କନ୍ୟାଭାବେ ଏପରି ଦୁଃଖ ସମୟରେ ପଣ୍ଡିତ ନେହେରୁ ଇନ୍ଦିରାଙ୍କୁ ଭୁଲାଇ ରଖିବାକୁ ଚେଷ୍ଟା କଲେ ।

୧୯୬୨ରେ ଭାରତ ଉପରେ ବିପଦ ଘନେଇ ଆସିଲା । ଦୀର୍ଘଦିନ ଧରି ଯେଉଁ ଚୀନଦେଶ ଭାରତର ବନ୍ଧୁ ରାଷ୍ଟ୍ରଭାବେ ପରିଚିତ ଥିଲା, ସେ ହଠାତ୍ ଭାରତର ହିମାଳୟର ନିମ୍ନ ଅଞ୍ଚଳ ଓ ପଶ୍ଚିମାଞ୍ଚଳରେ ସ୍ଥାନେ ସ୍ଥାନେ ଗଣ୍ଡଗୋଳ ସୃଷ୍ଟି କଲା । ଏହାର ପ୍ରତିବାଦ କରିବାରୁ ଚୀନ-ଭାରତ ଯୁଦ୍ଧ ଆରମ୍ଭ ହୋଇଗଲା ।

ଇନ୍ଦିରା ଗାନ୍ଧୀ ଥିଲେ ଧୈର୍ଯ୍ୟ ଓ ସାହସର ପ୍ରତୀକ । ପିଲାବେଳୁ ସେ ଭୟ କ'ଣ ଜାଣି ନଥିଲେ । ଯୁଦ୍ଧ ଚାଲିଥିବାବେଳେ ସେ ନିଜ ସୁରକ୍ଷା ପ୍ରତି ଦୃଷ୍ଟି ନଦେଇ ଯୁଦ୍ଧ ଚାଲିଥିବା ଅଞ୍ଚଳରେ ଯାଇ ପହଞ୍ଚିଲେ । ସେଠାରେ ଯୁଦ୍ଧ କାର୍ଯ୍ୟରେ ସୈନ୍ୟବାହିନୀକୁ ଯେପରି ସାହାଯ୍ୟ ଓ ସହଯୋଗ କରାଯାଇ ପାରିବ, ସେଥିରେ ଲାଗି ରହିଲେ ।

ଚୀନ ଯୁଦ୍ଧ ପରେ ପରେ ଶାନ୍ତିର ଦୂତ ପଣ୍ଡିତ ନେହେରୁଙ୍କ ମନୋବଳ ଭାଙ୍ଗି ପଡ଼ିଲା । ନିଜକୁ ସେ ଅସହାୟ ମନେ କରୁଥାନ୍ତି । ଏହି ସମୟରେ ଇନ୍ଦିରା ପିତାଙ୍କ ଅବସ୍ଥା ପ୍ରତି କଡ଼ା ନଜର ରଖି ସାହସ ଓ ଉତ୍ସାହ ଦେବାକୁ ଲାଗିଲେ । ଫଳରେ ଇନ୍ଦିରାଙ୍କୁ ଅଧିକ ପରିଶ୍ରମ କରିବାକୁ ପଡ଼ିଲା ।

୧୯୬୪ ମେ ୨୭ ତାରିଖ । ପଣ୍ଡିତ ନେହେରୁ ଇହଲୀଳା ତ୍ୟାଗ କଲେ । ତାଙ୍କ ମୃତ୍ୟୁରେ ଭାରତବର୍ଷ ଦୁଃଖରେ ଭାଙ୍ଗି ପଡ଼ିଲା । ସମସ୍ତଙ୍କ ମୁହଁରେ ଗୋଟିଏ କଥା "ନେହେରୁଙ୍କ ଆସନ ପାଇଁ ଯୋଗ୍ୟ କିଏ ?"

ପିତାଙ୍କ ମୃତ୍ୟୁପରେ ଇନ୍ଦିରା ଗାନ୍ଧୀ ମର୍ମାହତ ହେଲେ ।

ପ୍ରବୀଣ ସର୍ବୋଚ୍ଚ କଂଗ୍ରେସ ନେତା ତଥା ନେହେରୁ ମନ୍ତ୍ରିମଣ୍ଡଳର ଘରୋଇ ମନ୍ତ୍ରୀ ଲାଲବାହାଦୁର ଶାସ୍ତ୍ରୀଙ୍କ ନେତୃତ୍ୱରେ ନୂଆ ମନ୍ତ୍ରିମଣ୍ଡଳ ଗଠନ କରାଗଲା । ଇନ୍ଦିରା ଗାନ୍ଧୀଙ୍କ କାର୍ଯ୍ୟଦକ୍ଷତା ଓ ଅଭିଜ୍ଞତାକୁ ଆଖି ଆଗରେ ରଖି ତାଙ୍କୁ ଶାସ୍ତ୍ରୀଜୀଙ୍କ ମନ୍ତ୍ରିମଣ୍ଡଳରେ ସ୍ଥାନ ଦିଆଗଲା । ସେ ସୂଚନା ଓ ପ୍ରସାରଣ ବିଭାଗ ଦାୟିତ୍ୱରେ ରହିଲେ ।

ଇନ୍ଦିରାଙ୍କର ଆନ୍ତରିକତା ତଥା ନିଷ୍ଠା ଫଳରେ ଏହି ବିଭାଗରେ ଅଭୂତପୂର୍ବ ସଫଳତା ଦେଖାଦେଲା । ନୂତନ କାର୍ଯ୍ୟକ୍ରମରେ ନୂତନ ରୂପ ଦେବାକୁ ଇନ୍ଦିରା ପ୍ରାଣପଣେ ଚେଷ୍ଟା କଲେ ।

ପାକିସ୍ଥାନ ସହ ଭାରତର ୧୮ ଦିନ ଯୁଦ୍ଧ ପରେ ତାସକେଣ୍ଟ ଚୁକ୍ତି ହେଲା । ସେହିଦିନ ଶାସ୍ତ୍ରୀଜୀଙ୍କର ସେଠାରେ ଦେହାନ୍ତ ହୋଇଗଲା ।

ନେହେରୁଙ୍କ ମୃତ୍ୟୁ ସମୟରେ ଯେଉଁଭଳି ଅବସ୍ଥା ହୋଇଥିଲା, ଶାସ୍ତ୍ରୀଜୀଙ୍କ ପରେ ଠିକ୍ ସେହି ପ୍ରଶ୍ନ । "ବିରାଟ ଭାରତର ପ୍ରଧାନମନ୍ତ୍ରୀ ହେବାକୁ ଯୋଗ୍ୟ କିଏ ? ଯିଏ ପ୍ରଧାନମନ୍ତ୍ରୀ ହେବେ ସେ ନେହେରୁ ଓ ଶାସ୍ତ୍ରୀଜୀଙ୍କ ପରି ହୋଇପାରିବେ ତ ?"

୧୯୬୬ ଜାନୁଆରୀ ୧୯ ତାରିଖରେ ନେତା ନିର୍ବାଚନ କରାଗଲା । ଇନ୍ଦିରା ଗାନ୍ଧୀ ଓ ଶ୍ରୀ ମୋରାରଜୀ ଦେଶାଇଙ୍କ ମଧ୍ୟରେ ପ୍ରତିଦ୍ୱନ୍ଦିତା ହେଲା । ଇନ୍ଦିରା ଗାନ୍ଧୀ ୩୫୫ଟି ଭୋଟ ଓ ମୋରାରଜୀ ଦେଶାଇ ୧୬୯ଟି ଭୋଟ ପାଇଲେ ।

ଇନ୍ଦିରା ଗାନ୍ଧୀ ଭୋଟ ଦ୍ୱାରା ଜୟଲାଭ କରିବା ସଙ୍ଗେ ସଙ୍ଗେ ମୋରାରଜୀ ଦେଶାଇଙ୍କ ପାଖକୁ ଯାଇ ଆଶୀର୍ବାଦ ଭିକ୍ଷା କରିଥିଲେ । ବୟୋଜ୍ୟେଷ୍ଠ ନେତା ଦେଶାଇ ସୁଶାସନ ପାଇଁ ଆଶୀର୍ବାଦ କଲେ । ଇନ୍ଦିରା ପ୍ରଧାନମନ୍ତ୍ରୀ ହେଲେ ।

## ଇନ୍ଦିରା ଗାନ୍ଧୀଙ୍କ ଜୀବନର ତୃତୀୟ ପର୍ଯ୍ୟାୟ :—

ଇନ୍ଦିରା ଗାନ୍ଧୀ ପ୍ରଧାନମନ୍ତ୍ରୀ ପଦରେ ଅଭିଷିକ୍ତ ହେବା ପରେ ଆମେରିକା ସହ ସୁସମ୍ପର୍କ ସ୍ଥାପନ ପାଇଁ ମନ ବଳାଇଲେ । ଆମେରିକା ପ୍ରତି ଭାରତର ମନୋଭାବ ସେ ସ୍ପଷ୍ଟଭାବେ ଜଣାଇ ଦେଲେ । ତାଙ୍କର ମତ ଥିଲା—ସବୁଠାରୁ ପଣିଆ ହେଉଛି ରାଜନୀତିର ବଡ଼ ନୀତି । ଏହି ସିଦ୍ଧାନ୍ତକୁ ସେ ଅକ୍ଷରେ ଅକ୍ଷରେ ପାଳନ କରିଥିଲେ ।

୧୯୬୫ରେ ଯୁଦ୍ଧ ସମୟରେ ଆମେରିକା ଖୋଲାଖୋଲି ଭାବେ ପାକିସ୍ଥାନକୁ ସାହାଯ୍ୟ କରିଥିଲା । ଫଳରେ ଭାରତବାସୀ ଆମେରିକା ଉପରେ କ୍ଷୁବ୍ଧ ହୋଇ ଥାଆନ୍ତି । ଏକଥା ମଧ୍ୟ ଇନ୍ଦିରା ଗାନ୍ଧୀ ଆମେରିକାର ରାଷ୍ଟ୍ରପତିଙ୍କୁ ସ୍ପଷ୍ଟଭାବେ ଜଣାଇ ଦେଲେ ।

ଇନ୍ଦିରାଙ୍କର ଏଭଳି ଖୋଲାଖୋଲି ଘୋଷଣାକୁ କଂଗ୍ରେସ ସଂସଦୀୟ ବୋର୍ଡ଼ ସଭ୍ୟମାନେ ନାପସନ୍ଦ କଲେ ।

ଇନ୍ଦିରା ଗାନ୍ଧୀ ଏ କଥା ଜାଣିପାରି ଦୃଢ଼ତା ସହ ବୋର୍ଡ଼ ସଭ୍ୟମାନଙ୍କୁ କହିଦେଲେ ଯେ, ଯଦି ମୋର ମତ ଆପଣମାନଙ୍କୁ ନାପସନ୍ଦ ହୁଏ, ତା ହେଲେ ନୂଆ ନେତାବାଛନ୍ତୁ ଏବଂ ମୋତେ ବିଦାୟ ଦିଅନ୍ତୁ ।

୧୯୬୭ ମସିହାରେ ଲୋକସଭା ସାଧାରଣ ନିର୍ବାଚନ ହେଲା । ନିର୍ବାଚନ ପ୍ରଚାରରେ ସେ ଭୁବନେଶ୍ୱର ଆସି ନାକରେ ଆଘାତ ପାଇଲେ । ଫଳରେ ତାଙ୍କର ନାକରେ ଅସ୍ତ୍ରୋପଚାର କରିବାକୁ ପଡ଼ିଲା ।

ଇନ୍ଦିରା ଅସନ୍ତୁଷ୍ଟ ଗୋଷ୍ଠୀଙ୍କର ଚକ୍ରାନ୍ତ ଠିକ୍ ଭାବେ ବୁଝିପାରିଲେ । ନିଜର ସାହସ ଓ ଦୃଢ଼ତା ଦେଖାଇବା ପାଇଁ ସୁବିଧା ସୁଯୋଗର ଅପେକ୍ଷାରେ ଥାଆନ୍ତି । ରାଷ୍ଟ୍ରପତି ନିର୍ବାଚନ ସମୟରେ ହଠାତ୍ ସେ ସ୍ୱାଧୀନ ପ୍ରାର୍ଥୀ ଭି. ଭି. ଗିରିଙ୍କୁ ସମର୍ଥନ କରି ଜିତାଇ ଦେଲେ । ଇନ୍ଦିରାଙ୍କ ପାଇଁ କଂଗ୍ରେସ ଦଳ ହୁଲୁସ୍ଥୁଲ ହୋଇ ପଡ଼ିଲା । ଏହାଦ୍ୱାରା ଇନ୍ଦିରାଙ୍କ ଦୃଢ଼ତାର ପରିଚୟ ମିଳିଗଲା ।

କଂଗ୍ରେସର ବଡ଼ ନେତାମାନେ ବସି ବିଚାର କଲେ ଓ ଇନ୍ଦିରାଙ୍କ ସ୍ୱେଚ୍ଛାଚାର ଶାସନ ଉପରେ ସମାଲୋଚନା କଲେ । କଂଗ୍ରେସ ଦଳ ଦୁଇ ଭାଗରେ ବିଭକ୍ତ ହୋଇଗଲା । ଗୋଟିଏ ହେଲା ଇନ୍ଦିରାଙ୍କ ନେତୃତ୍ୱରେ ଗଠିତ ନୂଆ କଂଗ୍ରେସ, ଅନ୍ୟଟି ହେଲା ସଂଗଠନ କଂଗ୍ରେସ ।

ଏହି ନୂଆଦଳ ଗଠନ ହେବା ପରେ ଦେଶରେ ମଧ୍ୟବର୍ତ୍ତୀକାଳୀନ ନିର୍ବାଚନ ଆରମ୍ଭ ହେଲା । ସଂଗଠନ କଂଗ୍ରେସର ମୁଖ୍ୟ ଡାକରା ହେଲା—"ଇନ୍ଦିରା ହଟାଅ ।" ଇନ୍ଦିରା ଗାନ୍ଧୀଙ୍କ କଂଗ୍ରେସର ଡାକରା ହେଲା—"ଗରିବୀ ହଟାଅ ।"

ଲୋକଙ୍କ ଆସ୍ଥା ଇନ୍ଦିରାଙ୍କ ପ୍ରତି ଥିବା ଜଣା ପଡ଼ିଲା । ଇନ୍ଦିରା ବିଜୟ ଲାଭ କଲେ ।

ଇନ୍ଦିରା ଗାନ୍ଧୀ ପ୍ରଧାନମନ୍ତ୍ରୀ ଥିବା ସମୟରେ ଚେଷ୍ଟ ରଖୁଁଥିଲେ, ଭାରତର ପଡ଼ୋଶୀ ରାଷ୍ଟ୍ର ତଥା ନିଜ ଦେଶରେ ଶାନ୍ତି ରହିବା ଉଚିତ।

ପାକିସ୍ଥାନର କିଛି ଅଂଶ ପୂର୍ବ ବଙ୍ଗ ବା ପୂର୍ବ ପାକିସ୍ଥାନ ନାମରେ ଭାରତର ରାଜ୍ୟମାନଙ୍କ ମଧ୍ୟରେ ରହିଥିଲା। ପାକିସ୍ଥାନ ଏହି କ୍ଷୁଦ୍ର ଅଞ୍ଚଳବାସୀଙ୍କ ଉପରେ ଅମାନୁଷିକ ଅତ୍ୟାଚାର ଚଳାଇ ଥାନ୍ତି। ହଜାର ହଜାର ନିରାଶ୍ରୟ ଓ ନିର୍ଯ୍ୟାତିତ ଶରଣାର୍ଥୀ ଧନ ଜୀବନ ଧରି ବିକଳ ହୋଇ ଭାରତରେ ପ୍ରବେଶ କରୁଥାଆନ୍ତି। ଅଶାନ୍ତିର କବଳ ଗୁମ୍ଫା ଘେରି ରହିଥାଏ। ଖଣ୍ଡଯୁଦ୍ଧ, ଜଳାପୋଡ଼ା, ମୃତାହତ ଘଟଣା ପାଇଁ ଭାରତକୁ ଦାୟୀ କରି ପାକିସ୍ଥାନ ୧୯୭୧ ମସିହା ଡିସେମ୍ବର ୩ ତାରିଖ ଅପରାହ୍ନ ଘ ୫-୩୦ ମି.ରେ ଭାରତର ଶ୍ରୀନଗର, ପଠାଣକୋଟ, ଅମୃତସର, ଜଳନ୍ଧର, ଆଗ୍ରା, ଯୋଧପୁର, ଅବନ୍ତିପୁର, ଅମ୍ବାଲା ପ୍ରଭୃତି ବିମାନଘାଟିରେ ଆକ୍ରମଣ ଆରମ୍ଭ କରିଦେଲା।

ପାକିସ୍ଥାନକୁ ଉପଯୁକ୍ତ ଶିକ୍ଷା ଦେବା ପାଇଁ ଭାରତୀୟ ଜବାନଙ୍କୁ ଇନ୍ଦିରା ଗାନ୍ଧୀ ଡାକରା ଦେଲେ। ଯୁଦ୍ଧ ପ୍ରବଳ ରୂପ ଧାରଣ କଲା। ଏହା ଡିସେମ୍ବର ୧୮ ତାରିଖ ପର୍ଯ୍ୟନ୍ତ ଚାଲିଲା। ଶେଷରେ ପାକିସ୍ଥାନର ଚରମ ପରାଜୟ ଘଟିଲା। ପାକିସ୍ଥାନ ସେନାଧ୍ୟକ୍ଷ ଜେନେରାଲ ନିୟାଜି ଆତ୍ମସମର୍ପଣ କଲେ। ପ୍ରାୟ କୋଟିଏ ସୈନ୍ୟ ବନ୍ଦୀ ହେଲେ ଓ ଆହୁରି କୋଟିଏ ଶରଣାର୍ଥୀ ଭାବେ ଭାରତରେ ଆଶ୍ରୟ ନେଲେ।

ଇନ୍ଦିରାଙ୍କ ଧର୍ମଯୁଦ୍ଧର ବିଜୟ ଫଳରେ ସତ୍ୟର ଜୟ ଘଟିଲା। ତେଣୁ ଇନ୍ଦିରାଙ୍କୁ ଭାରତରତ୍ନ ଉପାଧିରେ ଭୂଷିତ କରାଗଲା।

ଏହି ଯୁଦ୍ଧ ଫଳରେ ନୂତନ ବଙ୍ଗଳା ଦେଶର ସୃଷ୍ଟି । ଇନ୍ଦିରାଙ୍କ ପ୍ରଶଂସା ନ କରି କେହି ରହିପାରିଲେ ନାହିଁ । କେତେକ ତାଙ୍କୁ ଦୁର୍ଗାଙ୍କ ଅବତାର ବୋଲି ମନେ କଲେ ।

୧୯୭୨ ମସିହାରେ ବିଭିନ୍ନ ରାଜ୍ୟ ବିଧାନସଭାର ନିର୍ବାଚନ କରାଗଲା । ଏଥିରେ ଇନ୍ଦିରାଙ୍କ ନେତୃତ୍ୱରେ ପରିଚାଳିତ କଂଗ୍ରେସ ଅପୂର୍ବ ସଫଳତା ହାସଲ କଲା । ଇନ୍ଦିରାଙ୍କ ପ୍ରତି ଲୋକଙ୍କର ପୂର୍ଣ୍ଣ ଆସ୍ଥା ରହିଲା ।

ଇନ୍ଦିରାଙ୍କ ଲୋକପ୍ରିୟତା ବଢ଼ିବା ସଙ୍ଗେ ସଙ୍ଗେ ବିରୋଧୀ ଗୋଷ୍ଠୀ ଅଯଥା ନାନା ସମାଲୋଚନା କରିବାରେ ଲାଗିଲେ ।

ବିରୋଧୀ ଦଳର ଅସହଯୋଗ ଓ ଆତ୍ମଘାତୀ ଗୋଷ୍ଠୀଙ୍କ ଚକ୍ରାନ୍ତ ଫଳରେ ଭାରତ ଭିତରେ ଅରାଜକତା ଦେଖା ଦେଲା । ଲଗାମ୍ ଛଡ଼ା ହୋଇ ସରକାରୀ କର୍ମଚାରୀ ବୁଲିଲେ । ଏସବୁ ଲକ୍ଷ୍ୟ କରି ଇନ୍ଦିରା ଗାନ୍ଧୀ ଏହାର ମୁକାବିଲା କରିବା ପାଇଁ ଦୃଢ଼ ପଦକ୍ଷେପ ନେବାକୁ ସ୍ଥିର କଲେ ।

ବିହାରରେ ଆନ୍ଦୋଳନ ଆରମ୍ଭ ହୋଇ ତାହା ଗୁଜୁରାଟକୁ ମାଡ଼ିଗଲା । ଇନ୍ଦିରାଙ୍କୁ କ୍ଷମତାରୁ ହଟାଇବା ପାଇଁ ସମସ୍ତ ବିରୋଧୀ ଦଳ ଲାଗି ପଡ଼ିଲେ । ଦେଶକୁ ଏପରି ଜଟିଳ ପରିସ୍ଥିତିରୁ ରକ୍ଷା କରିବା ପାଇଁ ସାରା ଦେଶରେ ଜରୁରୀ ପରିସ୍ଥିତି ଜାରି କରିଦେଲେ । ୧୯୬୭ ଜାନୁଆରୀ ୧୮ ତାରିଖ ପର୍ଯ୍ୟନ୍ତ ଏହି ଜରୁରୀ ପରିସ୍ଥିତି ଲାଗୁ ରହିଲା ।

ଜରୁରୀ ପରିସ୍ଥିତି ସମୟରେ ବିରୋଧୀ ଦଳର ନେତା-ମାନଙ୍କୁ ନଜରବନ୍ଦୀରେ ରଖାଗଲା । ସାରା ଦେଶରେ କଡ଼ା ଶାସନ

ଚାଲିଲା । ଏହାର ସୁଯୋଗ ନେଇ କେତେକ ଅଫିସର ଓ ପୁଲିସ ଜୁଲମ କଲେ । ସରକାର ବଦନାମ୍ ହୋଇଗଲା । ଏହି ସମୟରେ ସଞ୍ଜୟ ଗାନ୍ଧୀଙ୍କର କାର୍ଯ୍ୟକଳାପରେ ସର୍ବସାଧାରଣ ଅସନ୍ତୁଷ୍ଟ ହୋଇଗଲେ ।

ପରିବାର ନିୟନ୍ତ୍ରଣ ଥିଲା ଏକ ମହତ୍ତ୍ୱପୂର୍ଣ୍ଣ ଲକ୍ଷ୍ୟ ଥିବା ବିଭାଗ ଦ୍ୱାରା ସର୍ବସାଧାରଣଙ୍କ ଉପରେ ଜୋର ଜବରଦସ୍ତି କରାଗଲା । ଫଳରେ ଲୋକଙ୍କ ମଧ୍ୟରେ କୋକୁଆ ଭୟର ସଞ୍ଚାର ହେଲା ।

ଏହି ଜରୁରୀ ପରିସ୍ଥିତି ଜାରି କରିବା ଫଳରେ ଇନ୍ଦିରା ଗାନ୍ଧୀ ନିର୍ଦ୍ୱନ୍ଦ୍ୱରେ ଶାସନ କାର୍ଯ୍ୟ ଚଳାଇବା ସଙ୍ଗେ ସଙ୍ଗେ କେତେକ ଦଳୀୟ ସ୍ୱାର୍ଥ କାର୍ଯ୍ୟ କରିବାର ସୁଯୋଗ ପାଇଲେ । କେତେକ ଜନହିତକର କାମକୁ କାର୍ଯ୍ୟକାରୀ କରାଗଲେ ମଧ୍ୟ ତାହା ସୁଫଳ ଦେଇପାରିଲା ନାହିଁ । ଲୋକନାୟକ ଜୟପ୍ରକାଶଙ୍କ ପରି ବୟୋଜ୍ୟେଷ୍ଠ ନେତାଙ୍କୁ ବନ୍ଦୀ କରାଯିବା ଫଳରେ ଲୋକେ ବିରକ୍ତ ହୋଇଗଲେ । ଏହି ସମୟରେ ବ୍ୟକ୍ତି ସ୍ୱାଧୀନତାକୁ ସଙ୍କୁଚିତ କରାଯାଇଥିଲା ।

ଏହି ଜରୁରୀ ପରିସ୍ଥିତି ପରେ ନିର୍ବାଚନ କରାଗଲା । ବନ୍ଦୀଶାଳାରୁ ବାହାରି ବିରୋଧୀ ଦଳ ଏକଯୁଟ ହେଲେ । ଲୋକନାୟକ ଜୟପ୍ରକାଶଙ୍କ ଚେଷ୍ଟାରେ ସମସ୍ତ ବିରୋଧୀ ଦଳ ଏକ ମନ, ଏକ ଚିତ୍ତ ହୋଇ ଗୋଟିଏ ଦଳ "ଜନତା ଦଳ" ନାମରେ ନିର୍ବାଚନରେ ଲଢ଼ିଲେ । ଜରୁରୀ ପରିସ୍ଥିତି ସମୟରେ ଘଟିଥିବା ଅନ୍ୟାୟ, ଅତ୍ୟାଚାର, ବ୍ୟକ୍ତି ସ୍ୱାଧୀନତାର ସଙ୍କୋଚନ, ଜୋର ଜବରଦସ୍ତି ପରିବାର ନିୟନ୍ତ୍ରଣ ପ୍ରଭୃତିକୁ ବିରୋଧୀ ଦଳ

ଜନତା ସମ୍ମୁଖରେ ଉପସ୍ଥାପନା କଲେ । ହାତପାନ୍ତି ନିଜ ପାଇଁ ଭୋଟ ମାଗିଲେ । ଜୟପ୍ରକାଶଙ୍କ ଉପରେ ଅମାପ ବିଶ୍ୱାସ ରଖି ଜନତା ପାର୍ଟିକୁ ସର୍ବସାଧାରଣ ଭୋଟ ଦେଇ ଜୟଯୁକ୍ତ କରାଇଲେ ।

ଏଭଳି ଭାବରେ ଇନ୍ଦିରା ଗାନ୍ଧୀ ଓ ତାଙ୍କ ଦଳ ପରାଜୟ ସ୍ୱୀକାର କରିବେ, ସେ କଥା କେବେ କଳ୍ପନା କରି ନଥିଲେ ।

ମୋରାରଜୀ ଦେଶାଇ ଜନତା ଦଳର ନେତା ଭାବେ ନିର୍ବାଚିତ ହୋଇ ସରକାର ଗଠନ କଲେ । ଜନତା ଦଳ ଭିତରେ କ୍ଷମତା ଟଣାଓଟରା କାରଣରୁ ସରକାର ଅଧିକ ଦିନ ତିଷ୍ଠି ପାରିଲା ନାହିଁ ।

ଚୌଧୁରୀ ଚରଣ ସିଂହ ଦେଶର ପ୍ରଧାନମନ୍ତ୍ରୀ ହେବା ପାଇଁ ଜିଦ୍ ଧରି ଦଳରୁ ତାଙ୍କ ସମର୍ଥକମାନଙ୍କ ସହ ବାହାରି ଆସିଲେ ଓ ସରକାର ଗଠନ କଲେ । ଇନ୍ଦିରା ଗାନ୍ଧୀଙ୍କ ଉପରେ ବହୁତଗୁଡ଼ାଏ କମିଶନ ବସାଇ ତାଙ୍କୁ ବନ୍ଦୀ କରାଇଥିବା ଚରଣ ସିଂହ ଇନ୍ଦିରାଙ୍କ ସହଯୋଗ ଲୋଡ଼ିଲେ ।

ଇନ୍ଦିରାଙ୍କୁ ଅପୂର୍ବ ସୁଯୋଗ ମିଳିଗଲା । ସେ ଚତୁରତା ସହ ଚରଣଙ୍କୁ ସହଯୋଗ କରିବା ପାଇଁ ପ୍ରତିଶ୍ରୁତି ଦେଲେ ।

ଠିକ୍ ସମୟରେ ଚରଣ ସିଂହଙ୍କୁ ଉପଯୁକ୍ତ ଶିକ୍ଷା ଦେଲେ ଇନ୍ଦିରା ଗାନ୍ଧୀ । ଫଳରେ ଚରଣ ସିଂହ ମନ୍ତ୍ରିମଣ୍ଡଳର ଅବସାନ ଘଟିଲା । ଜନତା ଦଳ ଭାଙ୍ଗି ଖଣ୍ଡ ଖଣ୍ଡ ହୋଇଗଲା । ଲୋକଙ୍କର ଆଶା ଓ ବିଶ୍ୱାସ ପାଣି ଫୋଟକା ପରି ଉଭେଇଗଲା । ଲୋକେ ଜାଣିଗଲେ ସେଇ ଇନ୍ଦିରା ଗାନ୍ଧୀ ହିଁ ଏକମାତ୍ର ପ୍ରଧାନମନ୍ତ୍ରୀ ପାଇଁ ଯୋଗ୍ୟ ।

୧୯୮୦ ମସିହା ପର୍ଯ୍ୟନ୍ତ ଇନ୍ଦିରା ଗାନ୍ଧୀ ବହୁ ସମସ୍ୟାର ସମ୍ମୁଖୀନ ହେଲେ । ଏହି ସମୟ ମଧ୍ୟରେ ସେ ଧୈର୍ଯ୍ୟ ସହିତ ଜନତାର ରାୟ ମାନି ନେଇଥିଲେ ।

ଜାନୁଆରୀ ୧୪ ରେ ଇନ୍ଦିରା ଗାନ୍ଧୀ ପୁଣି ନିଜର ନୂତନ ମନ୍ତ୍ରିମଣ୍ଡଳକୁ ଶପଥ ପାଠ କରାଇଲେ । ନୂତନ ବିଂଶସୂତ୍ରୀ କାର୍ଯ୍ୟକ୍ରମକୁ ଜୋରସୋରରେ ଚାଲୁ କରାଇଲେ । ପୂର୍ବରେ ଘଟିଥିବା ଭୁଲ ଓ ତ୍ରୁଟିଗୁଡ଼ିକୁ ସେ ସୁଧାରିବା ପାଇଁ ପ୍ରାଣପଣେ ଲାଗିପଡ଼ିଲେ । ନୂତନ ଆଶାରେ ନୂତନ ରୂପ ଦେବା ପାଇଁ ଇନ୍ଦିରା ଗାନ୍ଧୀ ଆଗକୁ ବାହାରି ପଡ଼ିଲେ ।

## ଇନ୍ଦିରା ଗାନ୍ଧୀଙ୍କ ଜୀବନର ଚତୁର୍ଥ ପର୍ଯ୍ୟାୟ

୧୯୭୭ରେ ଜନତା ଦଳର ବିପୁଳ ବିଜୟ ଫଳରେ ଇନ୍ଦିରା ଗାନ୍ଧୀଙ୍କର ଅବସ୍ଥା ଅତି ଶୋଚନୀୟ ହୋଇ ପଡ଼ିଥିଲା । ତାଙ୍କର ଭିସା ଓ ପାସପୋର୍ଟକୁ ରଦ୍ଦ କରି ଦିଆଗଲା । ତାଙ୍କ ବିରୁଦ୍ଧରେ ଶହ ଶହ ମକଦ୍ଦମା କରାଗଲା । ଶାହା କମିଶନ ବସାଯାଇ ଇନ୍ଦିରାଙ୍କ ଦୋଷତ୍ରୁଟିକୁ ଲୋକଙ୍କ ଆଗରେ ଖୋଲାଖୋଲି ପ୍ରଚାର କରାଗଲା । ଇନ୍ଦିରାଙ୍କ ସମୟରେ ସର୍ବୋଚ୍ଚ ଉପାଧି ଭାରତରତ୍ନ ଓ ପଦ୍ମଶ୍ରୀ ପ୍ରଭୃତିକୁ ପ୍ରତ୍ୟାହାର କରି ନିଆଗଲା । ସ୍ୱରାଷ୍ଟ୍ର ମନ୍ତ୍ରୀ ଚରଣ ସିଂହ ତାଙ୍କୁ ବନ୍ଦୀ କଲେ । ଏହିପରି ବିଭିନ୍ନ ଉପାୟରେ ଇନ୍ଦିରାଙ୍କୁ ହଇରାଣ ହରକତ କରାଯାଇଥିଲା ।

ଏହି ବିପଦ ସମୟରେ ଇନ୍ଦିରା ଗାନ୍ଧୀଙ୍କୁ ଯେଉଁମାନେ ଆନ୍ତରିକ ସାହାଯ୍ୟ ଓ ସହଯୋଗ କରିଥିଲେ, ଇନ୍ଦିରା ସେମାନଙ୍କୁ

ଶକ୍ତି ନେଇଥିଲେ । ଇନ୍ଦିରାଙ୍କ ପାଖେ ପାଖେ ରହି ସଞ୍ଜୟ ଗାନ୍ଧୀ ଆବଶ୍ୟକବେଳେ ସାହାଯ୍ୟ ଓ ଧୈର୍ଯ୍ୟ ଦେଉଥିଲେ ।

ଇନ୍ଦିରାଙ୍କ ନୂଆ ମନ୍ତ୍ରିମଣ୍ଡଳରେ ତାଙ୍କର ପୁରାତନ ସହଯୋଗୀମାନେ ସ୍ଥାନ ପାଇଲେ ।

ପୁଣି ଦମ୍ଭରେ ଇନ୍ଦିରା ମନ୍ତ୍ରିମଣ୍ଡଳ ଅଟଳ ବିଶ୍ବାସ ରଖି ଦୃଢ଼ ଶାସନ ପାଇଁ ବ୍ୟବସ୍ଥା ଗ୍ରହଣ କଲେ । ସଞ୍ଜୟ ଗାନ୍ଧୀ ପରୋକ୍ଷ ଭାବେ ଶାସନକ୍ଷେତ୍ରରେ ହସ୍ତକ୍ଷେପ କରୁଥିଲେ । ଇନ୍ଦିରାଙ୍କର ସବୁଠାରୁ ବିଶ୍ବସ୍ତ ଓ ଜାଣୁଆ ସହଯୋଗୀ ହୋଇଥିଲେ, ସଞ୍ଜୟ ଗାନ୍ଧୀ । ସାରା ଦେଶରେ ଚହଳ ପଡ଼ିଲା, ଇନ୍ଦିରା ଗାନ୍ଧୀ ସଞ୍ଜୟ ଗାନ୍ଧୀଙ୍କୁ ପ୍ରଧାନମନ୍ତ୍ରୀ କରାଇବା ପାଇଁ ତାଲିମ ଦେଉଛନ୍ତି ।

ଇନ୍ଦିରା ଥିଲେ ଦୁଃସାହସୀ ଓ ଦୃଢ଼ ଆତ୍ମବିଶ୍ୱାସୀ, ସେ ବିରୋଧୀ ଗୋଷ୍ଠୀଙ୍କର ଅପପ୍ରଚାରକୁ ଖାତିର ନକରି ନିଜ କର୍ତ୍ତବ୍ୟରେ ଲାଗି ରହିଲେ, ସଞ୍ଜୟଙ୍କ ଇଙ୍ଗିତରେ ଭାରତ ଶାସନ ଚାଲିଲା । ଇନ୍ଦିରା ଏହାକୁ ସମର୍ଥନ କରୁଥିଲେ ।

ସେହି ବର୍ଷ ମାର୍ଚ୍ଚ ମାସ ୨୩ ତାରିଖରେ ଏକ ବିମାନ ଦୁର୍ଘଟଣା ଫଳରେ ଇନ୍ଦିରାଙ୍କ ଦୁଃସାହସୀ ପୁଅ ତଥା ଶାସନ କ୍ଷେତ୍ରରେ ଡାହାଣ ହାତ ସଞ୍ଜୟ ଗାନ୍ଧୀଙ୍କ ମୃତ୍ୟୁ ଘଟିଲା । ନୂଆ ନୂଆ ବିମାନକୁ ନେଇ ସଞ୍ଜୟ ପ୍ରତିଦିନ ସକାଳେ ଉଡ଼ାଇବାକୁ ଭଲ ପାଉଥିଲେ ।

ସେଦିନ ସଞ୍ଜୟ ଏକ ନୂଆ ବିମାନ ନେଇ ପାଲଟା ମାରୁଥିବା ସମୟରେ ଯାନ୍ତ୍ରିକ ଗଣ୍ଡଗୋଳ ଫଳରେ ଏହି ଦୁର୍ଘଟଣା ଘଟିଲା ।

ସଞ୍ଜୟ ଗାନ୍ଧୀଙ୍କ ମୃତ୍ୟୁରେ ଇନ୍ଦିରା ଗାନ୍ଧୀ ସବୁଠାରୁ ଅଧିକ ଆଘାତ ପାଇଲେ । ସେ ଯେତେ ପ୍ରକାର ଅସୁବିଧା ଦୁଃଖ ଓ ବିପଦର ସମ୍ମୁଖୀନ ହୋଇଥିଲେ, ସବୁଥିରେ ଦୃଢ଼ତା ସହ ଧୈର୍ଯ୍ୟ ଧରି ରହିଥିଲେ । ଏଥିର ଯୁବା ବୟସରେ ସାହସୀ, ବୁଦ୍ଧିମାନ ପୁଅକୁ ହରାଇ ଏକ ପ୍ରକାର ଭାଙ୍ଗି ପଡ଼ିଲେ । ଏହି ବିପଦ ସମୟରେ ରାଜୀବ ଆସି ଇନ୍ଦିରାଙ୍କୁ ନୂତନ ଆଶା ଓ ଭରସା ଦେଲେ ।

ସଞ୍ଜୟଙ୍କ ମୃତ୍ୟୁ ପରେ ବହୁ ମନଗଢ଼ା ଗୁଜବ ଉଠିଲା ।

ପିଲାଟି ବେଳୁ ଇନ୍ଦିରା ଦୁଃଖୀ । ଜଣକ ପରେ ଜଣେ ତାଙ୍କ ଆଖି ଆଗରେ ମାତା, ପିତା, ପତି ଓ ପୁତ୍ରଙ୍କର ଅକାଳ ବିୟୋଗ ଘଟିଥିଲା । ବାରମ୍ବାର ବିପଦର ସମ୍ମୁଖୀନ ହୋଇ, ମନେହୁଏ, ଇନ୍ଦିରା କଠିନ ପାଲଟି ଯାଇଥିଲେ । ହୃଦୟ ତାଙ୍କର ପଥର ପରି ଟାଣ ହୋଇ ଯାଇଥିଲା ।

ସଞ୍ଜୟଙ୍କ ମୃତ୍ୟୁରେ ଗୋଟିଏ ପୁତ୍ରର ମୃତ୍ୟୁ ହେଲା, ଏହି ଭାରତରେ ଆହୁରି ତାଙ୍କର କୋଟି, କୋଟି ପୁତ୍ର ଅଛନ୍ତି, ଏ କଥା ଚିନ୍ତା କରି ସେ ଧୈର୍ଯ୍ୟ ଧରି କର୍ତ୍ତବ୍ୟରେ ହେଳା କରି ନଥିଲେ । ୧୯୮୨ରେ ତାଙ୍କର ଘୋଷିତ ନୂତନ କୋଡ଼ିଏସୂତ୍ରୀ କାର୍ଯ୍ୟକ୍ରମ ଫଳରେ ଦେଶରେ ଅଭୂତପୂର୍ବ ସଫଳତା ମିଳିଲା । ଏହି ସମୟ ମଧ୍ୟରେ ଇନ୍ଦିରା ଯେଉଁସବୁ କାର୍ଯ୍ୟ ହାତକୁ ନେଇଥିଲେ, ସେଥିପାଇଁ ଭାରତର ସମ୍ମାନ ଶୀର୍ଷ ସ୍ଥାନରେ ପହଞ୍ଚି ପାରିଥିଲା ।

ଇନ୍ଦିରା ଗାନ୍ଧୀ ପ୍ରଧାନମନ୍ତ୍ରୀ ପଦରେ ଥାଇ ଯେଉଁ କେତୋଟି ମହତ୍ତ୍ୱପୂର୍ଣ୍ଣ ଐତିହାସିକ କାର୍ଯ୍ୟ କରିଗଲେ, ସେଗୁଡ଼ିକ

ମଧ୍ୟରୁ ୧୯୬୯ରେ ୧୪ଟି ବଡ଼ ବଡ଼ ବ୍ୟାଙ୍କକୁ ଜାତୀୟକରଣ କରାଯିବା ପ୍ରଥମ । ଦେଶରେ "ଗରିବ ହଟାଓ" ଧ୍ୱନିକୁ ସଫଳ କରିବାରେ ଏହି ଜାତୀୟକରଣ ବହୁ ସହାୟତା ଦେଲା । ଫଳରେ ବ୍ୟାଙ୍କରୁ ଦୁଃଖୀ, ଗରିବ, କୃଷି, ବେକାର ବ୍ୟକ୍ତି ଋଣ ନେଇ ନିଜର ତଥା ଦେଶର ଉନ୍ନତି କରିପାରିଲେ । ଏଥିପାଇଁ ଇନ୍ଦିରା ବହୁ ପ୍ରଶଂସିତ ହୋଇଥିଲେ ।

ସ୍ୱାଧୀନ ଭାରତ ଗଣତନ୍ତ୍ରରେ ପରିଣତ ହେବା ପରେ ରାଜା, ମହାରାଜାମାନେ ତାଙ୍କର ସ୍ୱତନ୍ତ୍ର ସୁବିଧା ଓ ହାତଖର୍ଚ୍ଚ ପାଇଁ ମୋଟା ପରିମାଣରେ ଅର୍ଥ ପାଉଥିଲେ । ଇନ୍ଦିରା ଗାନ୍ଧୀ ଏହାର ଦୃଢ଼ ପ୍ରତିବାଦ କରି, ଏ ସମସ୍ତ ସୁବିଧାକୁ ଉଚ୍ଛେଦ କଲେ । ଫଳରେ ସରକାରଙ୍କ ସହ ରାଜା ମହାରାଜାଙ୍କର ଯେଉଁ ଚୁକ୍ତି ବା ଲିଖନାମା କରାଯାଇଥିଲା, ତାହା ଖିଲାପ କରାଗଲା । ଏଥିପାଇଁ ବିଭିନ୍ନ ସ୍ଥାନରେ ମୋକଦ୍ଦମା କରାଗଲା । ସମୂହ ସ୍ୱାର୍ଥ ଦୃଷ୍ଟିରୁ ଏଭଳି କରାଯିବାର ଯଥାର୍ଥତାକୁ ଉପଲବ୍ଧି କରାଯାଇ ଇନ୍ଦିରାଙ୍କ ଅଧ୍ୟାଦେଶକୁ କାଏମ ରଖାଗଲା । ଫଳରେ ଇନ୍ଦିରାଙ୍କର ଆଉ ଏକ ବିଜୟ ଘଟିଥିଲା ।

କୃଷି, ଶିଳ୍ପ, ବିଜ୍ଞାନ ଓ ବୈଦେଶିକ ନୀତିରେ ଇନ୍ଦିରା ବିରାଟ ପରିବର୍ତ୍ତନ ଆଣିଲେ । ବିଜ୍ଞାନକ୍ଷେତ୍ରରେ ଅଗ୍ରଗତି କରି ଭାରତରେ ଇନ୍ଦିରା ବିଜ୍ଞାନର ବାଣୀ ଆଦେ ସୁପରିଚିତା ହେଲେ ।

ପରମାଣୁ ବିସ୍ଫୋରଣ କରି ଇନ୍ଦିରା ବିଶ୍ୱକୁ ଚମତ୍କୃତ କରାଇ ଦେଲେ । ଏହାଦ୍ୱାରା ବହୁ ରାଷ୍ଟ୍ର ଉପକୃତ ହୋଇ

ଯାଇଥିଲେ । ଇନ୍ଦିରା ଦୃଢ଼ତା ସହ ଘୋଷଣା କଲେ ଏହି ପରମାଣୁ କେବଳ ଶାନ୍ତି ପାଇଁ ବ୍ୟବହୃତ ହେବ ।

ଗୋଟିଏ ପରେ ଗୋଟିଏ ଉପଗ୍ରହ ପ୍ରେରଣ କରି ଭାରତ ସଫଳତା ହାସଲ କଲା । ଇନ୍ଦିରା ନିଜେ ସେଥିପାଇଁ ଏହି ବିଭାଗଗୁଡ଼ିକୁ ଅଧିକାଂଶ ସମୟ ନିଜ ହାତରେ ରଖିଥିଲେ ।

ଆଧୁନିକ ଯୁଗରେ ପେଟ୍ରୋଲର ଆବଶ୍ୟକତା ସବୁଠାରୁ ଅଧିକ । ଏକଥା ଇନ୍ଦିରା ଅନୁଭବ କରିଥିଲେ । ପେଟ୍ରୋଲ ହିଁ ବୃହତ୍ ପ୍ରଗତିର ମୂଳ ଉପାଦାନ । ଏହି ପେଟ୍ରୋଲ ପାଇଁ ବିଦେଶୀ ରାଷ୍ଟ୍ର ଭାରତରୁ କୋଟି କୋଟି ଟଙ୍କା ନେଇ ଯାଉଛନ୍ତି । ଏଥିପାଇଁ ଇନ୍ଦିରା ଗାନ୍ଧୀ ଦୃଢ଼ ପଦକ୍ଷେପ ନେଇ, ଭାରତରେ ତୈଳ କୂପମାନ ଖନନ ଓ ଅନୁସନ୍ଧାନରେ ଜୋର ଦେଲେ । ଫଳରେ ଆଜି ଆମେ ତୈଳ ଉତ୍ପାଦନକାରୀ ରାଷ୍ଟ୍ରଭାବେ ପରିଗଣିତ ହୋଇ ପାରିଛେ ।

ଦେଶକୁ ଆତ୍ମନିର୍ଭରଶୀଳ କରିବା ପାଇଁ ବିଭିନ୍ନ ରାଜ୍ୟରେ ବିଭିନ୍ନ ଶିଳ୍ପ ପ୍ରତିଷ୍ଠା କରିବା ଥିଲା ଇନ୍ଦିରାଙ୍କର ମୁଖ୍ୟ ଲକ୍ଷ୍ୟ ।

ଲୋକସଂଖ୍ୟାରେ ଭାରତ ବିଶ୍ୱରେ ଦ୍ୱିତୀୟ ବୃହତ୍ତମ ରାଷ୍ଟ୍ର । ପ୍ରାୟ ସତୁରି କୋଟି ଲୋକଙ୍କ ପାଇଁ ଖାଦ୍ୟର ବ୍ୟବସ୍ଥା କରିବା ଏବଂ ଅଧିକ ଫସଲ ଅମଳ କରିବା ପାଇଁ କୃଷି ଉପରେ ଇନ୍ଦିରା ଗାନ୍ଧୀ ଜୋର୍ ଦେଇଥିଲେ । ଏଥିପାଇଁ ଜଳସେଚନର ଆବଶ୍ୟକତା ଲକ୍ଷ୍ୟ କରି ନୂଆ ନୂଆ ଯୋଜନାମାନ କାର୍ଯ୍ୟକାରୀ

କରାଇଲେ । ଫଳରେ ଆମ ଦେଶ କୃଷିରେ ପ୍ରଭୂତ ଉନ୍ନତି କରିପାରିଛି ।

ବିଶ୍ୱଶାନ୍ତି ଓ ବୈଦେଶିକ ନୀତିକ୍ଷେତ୍ରରେ ଇନ୍ଦିରା ଗାନ୍ଧୀ ଚରମ ସୀମାରେ ପହଞ୍ଚିଗଲେ । ତେଣୁ ତାଙ୍କୁ ବିଶ୍ୱର ଶ୍ରେଷ୍ଠ ନାରୀଭାବେ ବିଦେଶୀ ରାଷ୍ଟ୍ର ସମ୍ମାନ ପ୍ରଦାନ କଲେ ।

୧୯୮୩ ମସିହାରେ ରାଜ୍ୟଗୋଷ୍ଠୀ ନିରପେକ୍ଷ ସମ୍ମିଳନୀ ଡକାଇ ଇନ୍ଦିରା ଗାନ୍ଧୀ ଦେଶର ସମ୍ମାନକୁ ଉଚ୍ଚରୁ ଆହୁରି ଉଚ୍ଚକୁ ଉଠାଇ ଦେଲେ । ଏହି ସମ୍ମିଳନୀରେ ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧୀ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କଲେ । ଏଥିରେ ସେ ଯେଉଁଭଳି ସାହସିକତା, ଶାନ୍ତି ପ୍ରତିଷ୍ଠା ଦିଗରେ ଦୃଢ଼ତା ପ୍ରଦର୍ଶନ କଲେ, ବିଶ୍ୱର ବଡ଼ ବଡ଼ ନେତା ତାଙ୍କୁ ପ୍ରଶଂସା ନକରି ରହିପାରିଲେ ନାହିଁ ।

ଏହି ଗୋଷ୍ଠୀ ନିରପେକ୍ଷ ସମ୍ମିଳନୀରେ ଇନ୍ଦିରା ଗାନ୍ଧୀଙ୍କୁ ଅଧ୍ୟକ୍ଷ ଭାବେ ନିର୍ବାଚିତ କରାଗଲା । ଏବେ ଇନ୍ଦିରା ଗାନ୍ଧୀ ବିଶ୍ୱର ଜଣେ ପ୍ରଖ୍ୟାତ ନେତାଭାବେ ପରିଗଣିତ ହେଲେ । ବିଶ୍ୱର ବିଭିନ୍ନ ସମସ୍ୟାର ସମାଧାନ ତଥା ଶାନ୍ତି ପ୍ରତିଷ୍ଠା ପାଇଁ ବିଭିନ୍ନ ସ୍ଥାନରୁ ନେତାମାନେ ଆସି ତାଙ୍କର ପରାମର୍ଶ ନେଉଥିଲେ ।

ଇନ୍ଦିରା ଗାନ୍ଧୀ ଏମିତି ଏକ ସମୟରେ ପହଞ୍ଚିଗଲେ, ତାଙ୍କର ମୁହଁରୁ ଯେଉଁ ଭାଷଣ ବାହାରୁଥିଲା; ତାହା ସତେ ଯେପରି ବହୁ ମୂଲ୍ୟବାନ ମନ୍ତବ୍ୟ ଭାବେ ବିଶ୍ୱର କରାଗଲା ।

ଇନ୍ଦିରା ଥିଲେ ବହୁମୁଖୀ ପ୍ରତିଭାର ଅଧିକାରୀ । କ୍ରୀଡ଼ା କ୍ଷେତ୍ରରେ ଭାରତ କପରି ସୁନାମ ଅର୍ଜନ କରିପାରିବ, ସେଥିପାଇଁ

ସେ ସ୍ୱତନ୍ତ୍ର କ୍ରୀଡ଼ା ବିଭାଗ ପ୍ରତିଷ୍ଠା କରିଥିଲେ । ୧୯୮୨ ମସିହା ଡିସେମ୍ବର ମାସରେ ସେ ଭାରତର ଦିଲ୍ଲୀ ସହରରେ ନବମ ଏସିଆନ୍ ଖେଳ ପ୍ରଦର୍ଶନ କରାଇଲେ, ତା' ଫଳରେ ବିଶ୍ୱର ବହୁ ରାଷ୍ଟ୍ର ଯୋଗ ଦେଇଥିଲେ । ଏହି କ୍ରୀଡ଼ା ପ୍ରତିଯୋଗିତା ଫଳରେ ମୁଖ୍ୟତଃ ବିଶ୍ୱରେ ଭ୍ରାତୃଭାବ ଜାଗରଣ କରି ଇନ୍ଦିରା ଗାନ୍ଧୀ ଏକ ନୂତନ ପରମ୍ପରା ସୃଷ୍ଟି କଲେ ।

ଏହି କ୍ରୀଡ଼ା ପ୍ରଦର୍ଶନ ପାଇଁ ଦେଶରୁ ଅଜସ୍ର ଅର୍ଥ ବିନିଯୋଗ କରାଯାଇ ଥିବାରୁ ସେ ବିରୋଧୀ ଗୋଷ୍ଠୀଙ୍କ ଦ୍ୱାରା ସମାଲୋଚିତ ହେଲେ ମଧ୍ୟ ଅଧିକ ଲୋକପ୍ରିୟତା ହାସଲ କଲେ ।

ଭାରତରେ ଅଲିମ୍ପିକ କ୍ରୀଡ଼ା କରାଇବା ପାଇଁ ଇନ୍ଦିରାଙ୍କର ଇଚ୍ଛା ଥିଲା । କ୍ରୀଡ଼ା କ୍ଷେତ୍ରରେ ଦେଶ ତଥା କ୍ରୀଡ଼ାବିତ୍‌ମାନଙ୍କୁ ଯଥେଷ୍ଟ ଉତ୍ସାହିତ କରିଥିବାରୁ ଇନ୍ଦିରା ଗାନ୍ଧୀଙ୍କୁ ଅଲିମ୍ପିକ ପୁରସ୍କାର ପ୍ରଦାନ କରାଯାଇଥିଲା । ଏହି ପୁରସ୍କାରଟି ଅତି ସମ୍ମାନଜନକ ପୁରସ୍କାର ଭାବେ ପରିଚିତ । ୧୯୮୦ରେ ଦେଶର ବିଭିନ୍ନ ସହରରେ କ୍ରୀଡ଼ାର ଉନ୍ନତି ପାଇଁ ବଡ଼ ବଡ଼ ଷ୍ଟାଡ଼ିଏମ୍ ନିର୍ମାଣ କରାଇ ସେ କ୍ରୀଡ଼ାକୁ ଉତ୍ସାହିତ କରିଥିଲେ ।

ଇନ୍ଦିରାଙ୍କର ସ୍ୱଭାବ ଥିଲା, ପବିତ୍ର, ନିର୍ମଳ ଓ ସ୍ୱଚ୍ଛ । ସେହିପରି ତାଙ୍କର ବେଶଭୂଷା ଥିଲା ସରଳ ଓ ସାଧାସିଧା ।

"ଏହି ବିରାଟ ଭାରତର ଅଖଣ୍ଡତାକୁ ବଜାୟ ରଖିବା" ଥିଲା ତାଙ୍କ ଜୀବନ ପଣ ।

ଶେଷରେ ଏହି ଭାରତକୁ ଖଣ୍ଡ ଖଣ୍ଡ କରି ନଷ୍ଟ କରିଦେବାକୁ ଚାହୁଁଥିବା ଆତଙ୍କବାଦୀମାନଙ୍କୁ ଦମନ କରିବାରୁ, ସେ ଦେଶରକ୍ଷା କରି ନିଜେ ଅମର ଶହୀଦ ହୋଇଗଲେ ।

ଯେତେଦିନ ପର୍ଯ୍ୟନ୍ତ ଭାରତ ବଞ୍ଚିଥିବ, ଆକାଶରେ ଚନ୍ଦ୍ର, ସୂର୍ଯ୍ୟ ଆଲୋକ ଦାନ କରୁଥିବେ; ସେତେଦିନ ପର୍ଯ୍ୟନ୍ତ ଇନ୍ଦିରା ଗାନ୍ଧୀଙ୍କ ନାମ ଅମର ହୋଇ ସ୍ୱର୍ଣ୍ଣାକ୍ଷରରେ ଭାରତ ଇତିହାସର ପୃଷ୍ଠା ମଣ୍ଡନ କରୁଥିବ ।

## ଇନ୍ଦିରା ଗାନ୍ଧୀଙ୍କ ଜୀବନର ଶେଷ ପର୍ଯ୍ୟାୟ

୧୯୮୪ ମସିହା ଅକ୍ଟୋବର ମାସ ଅଣତିରିଶି ଓ ତିରିଶି ତାରିଖ ଦୁଇଦିନ ଗସ୍ତରେ ଇନ୍ଦିରା ଗାନ୍ଧୀ ଓଡ଼ିଶା ଆସିଥିଲେ ।

ଏହି ଦୁଇଦିନ ମଧ୍ୟରେ ସେ ବଲାଙ୍ଗୀରର ସଇଁତଲା ଠାରେ ପ୍ରତିରକ୍ଷା ବିଭାଗର ଏକ ଗୋଳାବାରୁଦ କାରଖାନାର ଶିଳାନ୍ୟାସ କରିଥିଲେ । ତା ପରେ କୋରାପୁଟ ଜିଲ୍ଲାର ଉମରକୋଟ ଓ ମାଲକାନଗିରି ଅଞ୍ଚଳରେ ସାଧାରଣ ସଭାରେ ଭାଷଣ ଦେଇଥିଲେ । ଏହି ସମସ୍ତ ମଧ୍ୟରେ ସେ ଓଡ଼ିଶାର ଆଦିବାସୀ ଲୋକଙ୍କ ସହ ମିଶିବାର ସୁଯୋଗ ପାଇଥିଲେ ।

୩୦ ତାରିଖ ଦିନ ଇନ୍ଦିରା ଗାନ୍ଧୀ ଓଡ଼ିଶାର ରାଜଧାନୀ ଭୁବନେଶ୍ୱରଠାରେ ଯେଉଁ ଭାଷଣ ପ୍ରଦାନ କଲେ, ତାହା ତାଙ୍କ ଜୀବନର ସର୍ବଶ୍ରେଷ୍ଠ ଓ ସର୍ବଶେଷ ଭାଷଣ ଥିଲା ।

ଇନ୍ଦିରା ଗାନ୍ଧୀଙ୍କ ପରି ସାହସୀ ଓ ଆତ୍ମବିଶ୍ୱାସୀ ପ୍ରଧାନମନ୍ତ୍ରୀ ନିଜେ ସତେ ଯେପରି ତାଙ୍କର ଆସନ୍ନ ମୃତ୍ୟୁର ଛାୟା ଦେଖି ପାରିଥିଲେ । ସେ ଉତ୍କଳର ଗୌରବ ତଥା ଭାରତର ଗୌରବ କାହାଣୀ ସଙ୍ଗେ ସଙ୍ଗେ କଳିଙ୍ଗ ସମ୍ରାଟ ଅଶୋକଙ୍କ ବାଣୀ ଓ ତାଙ୍କର ମହାତ୍ମାପୂତ ଉପରେ ସାରଗର୍ଭକ ଭାଷଣ

ପ୍ରଦାନ କରିଥିଲେ । ତା ପରେ ସେ ପରିଷ୍କାର ଭାବେ କହିଥିଲେ, "ସେମାନେ ମୋତେ ମାରି ଦେବାକୁ ଚେଷ୍ଟା କରୁଛନ୍ତି । ଆସନ୍ତାକାଲି ମୁଁ କ୍ଷମତାରେ ଥାଇ ନପାରେ । ଜାତିର ସେବା କରୁ କରୁ ଯଦି ମୋତେ ପ୍ରାଣବଳୀ ଦେବାକୁ ପଡ଼େ, ତେବେ ତାହା ହେବ ମୋ ପାଇଁ ଗୌରବ । ମୋର ଦୃଢ଼ ବିଶ୍ୱାସ ଯେ, ମୋ ଦେହର ପ୍ରତିଟି ରକ୍ତବିନ୍ଦୁ ଏହି ଦେଶର ଅଭିବୃଦ୍ଧିରେ ସହାୟକ ହେବା ସଙ୍ଗେ ସଙ୍ଗେ ଏହାକୁ ଶକ୍ତିଶାଳୀ ଓ ଗତିଶୀଳ କରି ଗଢ଼ି ତୋଳିବ ।"

ପ୍ରକୃତରେ ଚିନ୍ତା କରିବାରୁ ଜଣାପଡ଼େ, ଏହି ପଦେ ଭାଷଣ, ଇନ୍ଦିରାଙ୍କୁ ଅମର କରିଲା ତାଙ୍କର ଚରମ ଆତ୍ମୋତ୍ସର୍ଗର ପ୍ରକୃତ ପରିଚୟ ଦେଲା ।

ଗୋପବନ୍ଧୁଙ୍କ କଲମରେ ଥରେ ଏହି କଥା ବାହାରି ପଡ଼ିଥିଲା—

"ମିଶୁ ମୋର ଦେହ ଏ ଦେଶ ମାଟିରେ
ଦେଶବାସୀ ଚାଲିଯାଆନ୍ତୁ ପିଠିରେ ।"

ସେହିଦିନ ସେ ଏକ ସାମ୍ବାଦିକ ସମ୍ମିଳନୀରେ ଯୋଗ ଦେଇ ଦେଶର ସମସ୍ୟା ସମ୍ପର୍କରେ ସାମ୍ବାଦିକମାନଙ୍କ ସହ ଆଳାପ ଆଲୋଚନା କରି ତାଙ୍କର ଗସ୍ତ ଶେଷ କରି ଦିଲ୍ଲୀ ଯାତ୍ରା କଲେ ।

ଉତ୍କଳବାସୀ ଇନ୍ଦିରାଙ୍କୁ ଚିର ବିଦାୟ ଦେଲେ ।

ଉତ୍କଳ ହେଉଛି ଜଗନ୍ନାଥ ଧାମ । ଏହାକୁ ଶ୍ରେଷ୍ଠ ଧାମ କହନ୍ତି । ସବୁ ତୀର୍ଥ ଭ୍ରମଣ ପରେ ଏହି ତୀର୍ଥ ଦର୍ଶନ କରିବାକୁ ହୁଏ । ଏହାପରେ ଭକ୍ତ ନିଜକୁ ନିଷ୍ପାପ ମନେ କରେ ।

ଭାରତ ଶାସନର ସର୍ବୋଚ୍ଚ ଆସନରେ ଥିବାବେଳେ ପଣ୍ଡିତ ନେହେରୁ ମୃତ୍ୟୁ ପୂର୍ବରୁ ଏହି ଉତ୍କଳଧାମରେ ପାଦ ଦେଇ ସ୍ୱର୍ଗାରୋହଣ କରିଥିଲେ ।

ଇନ୍ଦିରାଙ୍କ ଭାଗ୍ୟରେ ତାହାହିଁ ଘଟିଲା । ଇନ୍ଦିରାଙ୍କ ଜୀବନର ଶେଷ ଦୁଇ ଦିନ ଓଡ଼ିଶାରେ କଟିଲା ।

ଇନ୍ଦିରା ଗାନ୍ଧୀ ଓଡ଼ିଶା ଗସ୍ତ ଶେଷ କରି ଦିଲ୍ଲୀ ଫେରିଥିଲେ । ସେ ନୂଆଦିଲ୍ଲୀର ଏକ ନମ୍ବର ସଫଦରଜଙ୍ଗ ରୋଡ଼ସ୍ଥିତ ବାସଭବନରେ ରହୁଥାନ୍ତି ।

ଅକ୍ଟୋବର ମାସ ୩୧ ତାରିଖ ବର୍ଷ ଆକାଶରେ ଅଶୁଭ ସୂର୍ଯ୍ୟ ଉଦୟ ହେଲେ ।

ଇନ୍ଦିରା ଗାନ୍ଧୀ ଜନପ୍ରିୟ ପ୍ରଧାନମନ୍ତ୍ରୀ ଭାବେ ସପ୍ତାହରେ ୫ ଦିନ ସର୍ବସାଧାରଣଙ୍କୁ ସକାଳବେଳା, ତାଙ୍କର ବାସଭବନ ନିକଟସ୍ଥ ଆକବର ରୋଡ଼ସ୍ଥିତ ଅଫିସରେ ସାକ୍ଷାତ କରୁଥିଲେ ।

କିଛିଦିନ ହେଲା—ହଲିଉଡ୍‌ର ପ୍ରଖ୍ୟାତ ଅଭିନେତା ପିଟର ଉଷ୍ଟିନୋଭ୍, ଇନ୍ଦିରା ଗାନ୍ଧୀଙ୍କ ଉପରେ ଏକ ଧାରାବାହିକ ଚଳଚ୍ଚିତ୍ର ନିର୍ମାଣ କରୁଥାନ୍ତି । ଇନ୍ଦିରା ଗାନ୍ଧୀଙ୍କ ଓଡ଼ିଶା ଗସ୍ତ ସମୟରେ ପିଟର ଉଷ୍ଟିନୋଭ ତାଙ୍କ ସହିତ ଓଡ଼ିଶା ଆସି ବିଭିନ୍ନ ସ୍ଥାନରେ ଇନ୍ଦିରାଙ୍କ ଚିତ୍ର ଉତ୍ତୋଳନ କରି ନେଇଥିଲେ ।

ଜନତା ଦରବାରରେ ସେଦିନ ଇନ୍ଦିରା ଗାନ୍ଧୀ ପିଟର ଉଷ୍ଟିନୋଭଙ୍କୁ ସାକ୍ଷାତକାର ଦେବାର କାର୍ଯ୍ୟକ୍ରମ ଥାଏ ।

ସମୟ ସକାଳ ନଅଟା ଦଶ ମିନିଟ । ଇନ୍ଦିରା ଗାନ୍ଧୀ ନାରଙ୍ଗୀ ରଙ୍ଗର ଏକ ସିଲ୍‌କ ଶାଢ଼ୀ ପିନ୍ଧି ବାସଭବନରୁ

ବାହାରି ପଡ଼ିଲେ । କେତେ ମିନିଟ୍ ପୂର୍ବରୁ ଇନ୍ଦିରା ନିଜର ମେକ୍‌ଅପ୍ ସାରି ଅରୁଣା ଆସଫ୍ ଅଲ୍ଲୀଙ୍କୁ ପଚାରିଥିଲେ—ମୁଁ କେମିତି ଦିଶୁଛି ?

ଉତ୍ତରରେ ଅରୁଣା କହିଲେ—"ସତରେ ଆଜ ଖୁବ ସୁନ୍ଦର ଦେଖାଯାଉଛ, ଏକ ଦେବୀ ପ୍ରତିମା ପରି ।"

ସାକ୍ଷାତକାର ଗ୍ରହଣ ପାଇଁ ପିଟର ଉଷ୍ଟିନୋଭ ଆକବର ରୋଡସ୍ଥିତ ଅଫିସ ପରିସର ମଧ୍ୟରେ ଥିବା ଲନ୍‌ରେ ନିଜ ଷ୍ଟାଫ୍‌ଙ୍କ ସହ ଅପେକ୍ଷା କରିଥାନ୍ତି ।

ଇନ୍ଦିରା ଗାନ୍ଧୀ ଦ୍ରୁତ ପାଦ ପକାଇ ଆକବର ରୋଡ଼ସ୍ଥିତ ଅଫିସ୍ ଆଡ଼କୁ ଆଗେ ଆଗେ ଚାଲିଥାନ୍ତି । ତାଙ୍କ ପଛରେ କନେଷ୍ଟବଲ ନାରାୟଣ ସିଂହ ଛତାଟିଏ ଧରି ଆସୁଥିଲେ । ତାଙ୍କ ପଛରେ ଆସୁଥିଲେ, ପ୍ରଧାନମନ୍ତ୍ରୀଙ୍କ ପ୍ରଧାନ ସହାୟକ ଶ୍ରୀ ଆର୍. କେ. ଧାବନ, ବୈଦେଶିକ ବ୍ୟାପାର ପରାମର୍ଶଦାତା ଶ୍ରୀ ଜି. ପାର୍ଥସାରଥୀ ଏବଂ ତାଙ୍କର ଆଉ ଜଣେ ବିଶ୍ୱସ୍ତ ଦେହରକ୍ଷୀ ନାଥୁରାମ୍ ।

ବାସଭବନ ଓ ଅଫିସ ମଧ୍ୟରେ ଏକ ଫାଟକ ପଡ଼େ । ଇନ୍ଦିରା ଗାନ୍ଧୀ ଆସୁଥିବାର ଦେଖି ଫାଟକ ଖୋଲିଦେଲା ସବ୍-ଇନ୍‌ସପେକ୍ଟର ବିଅନ୍ତ ସିଂ । ଅଭ୍ୟାସବଶତଃ ଇନ୍ଦିରା ଗାନ୍ଧୀ ବିଅନ୍ତ ସିଂର ଅଭିବାଦନ ଗ୍ରହଣ କଲେ । ସେ ଅଳ୍ପ କେଇ ପାଦ ଆଗକୁ ଚାଲି ଆସିଥାନ୍ତି । ହଠାତ୍ ଖୁବ୍ ନିକଟରୁ ଇନ୍ଦିରା ଗାନ୍ଧୀଙ୍କୁ ଲକ୍ଷ୍ୟ କରି ବିଅନ୍ତ ସିଂ ପଏଣ୍ଟ ୩୮ ସର୍ଭିସ୍ ରିଭଲଭର୍‌ରୁ ୫ ରାଉଣ୍ଡ ଗୁଳି ଚାଳନା କରିଦେଲା ।

ଅପ୍ରତ୍ୟାଶିତ ଭାବେ ଏମିତି ଘଟଣା ଘଟିବା ଦେଖି ଇନ୍ଦିରା କାନ୍ଦି ପକାଇଲେ, "ଏ' କ୍ୟା କର୍ ରହେ ହୋ" ଅର୍ଥାତ୍ "ଏ କ'ଣ କରୁଛ" ? ଆଘାତ ପାଇ ସେ ଧୋକଏ ବୁଲିପଡ଼ି ତଳେ ପଡ଼ିଗଲେ ।

ଏ ଭଳି ପରିସ୍ଥିତିର ମୁକାବିଲା କରିବା ପାଇଁ କେହି ପ୍ରସ୍ତୁତ ନଥିଲେ । ତେଣୁ ଇନ୍ଦିରା ଗାନ୍ଧୀଙ୍କ ସହ ଯେଉଁମାନେ ଥିଲେ, ସେମାନେ ଆତ୍ମରକ୍ଷା ପାଇଁ ଜୀବନ ନେଇ ଏଣେ ତେଣେ ଧାଇଁଲେ । କେବଳ ସେଠାରେ ଥିବା ସବ୍-ଇନ୍‌ସପେକ୍ଟର ଗୋଡ଼ରେ ଗୁଳି ଖାଇ ମଧ୍ୟ ଇନ୍ଦିରାଙ୍କୁ ବଞ୍ଚାଇବା ପାଇଁ ଧାଇଁ ଆସିଥିଲେ ।

ନିସ୍ତବ୍ଧତା ମଧ୍ୟରେ ୪୦ ସେକେଣ୍ଡ କଟିଗଲା । ଇନ୍ଦିରା ଗାନ୍ଧୀଙ୍କର ଦ୍ୱିତୀୟ ହତ୍ୟାକାରୀ ସତ୍‌ୱନ୍ତ ସିଂ ଘଟଣାସ୍ଥଳ ଠାରୁ ଅଳ୍ପ ଦୂରରେ ଥିଲା । ସେ ହଠାତ୍ ଧାଇଁ ଆସି ତଳେ ପଡ଼ି ରକ୍ତରେ ଜୁଡ଼ୁବୁଡ଼ୁ ଅବସ୍ଥାରେ ଥିବା ଇନ୍ଦିରାଙ୍କ ଉପରେ ଧରିଥିବା ଷ୍ଟେନ୍‌ଗନ୍‌ରୁ ଅବାଧରେ ଭାବେ ୨୫ଟି ଗୁଳି ଚଳାଇଲା ।

ଓଃ ! କି ଅମାନୁଷିକତା, କି ଦାରୁଣ ଘଟଣା !!

ଇନ୍ଦିରା ଗାନ୍ଧୀଙ୍କ ନିରାପତ୍ତା ଦାୟିତ୍ୱରେ ଥିବା ତାଲିମପ୍ରାପ୍ତ, ସଂରକ୍ଷଣ ରକ୍ଷୀମାନେ ଏଭଳି ପରିସ୍ଥିତିରେ କ'ଣ କରିବେ, ସ୍ଥିର କରିପାରୁ ନଥାନ୍ତି । ଏହା ମଧ୍ୟରେ ୨୦ ସେକେଣ୍ଡ ଅତିବାହିତ ହୋଇଗଲା ।

ଏ' ଘଟଣା ଘଟିଗଲା—୯ଟା ୧୮ ମିନିଟରେ ।

ଗୁଳି ଶବ୍ଦ ଶୁଣି ତେଣେ ଅପେକ୍ଷାରେ ଥିବା ଅଭିନେତା ଉସ୍ତିନୋଭ ଚମକି ପଡ଼ିଲେ । ବାଣ ଫୁଟିଲା ପରି ଶବ୍ଦ ଶୁଣି ସେ ତାଙ୍କର ଦଳ ସହିତ ଘଟଣା ସ୍ଥଳରେ ପହଞ୍ଚି ଇନ୍ଦିରାଙ୍କ ଅବସ୍ଥା ଦେଖି କ୍ୟାମେରା ମ୍ୟାନଙ୍କୁ ଡାକି ଚିତ୍ର ଉତ୍ତୋଳନ ଆରମ୍ଭ କରିଦେଲେ ।

ଇନ୍ଦିରାଙ୍କ ହତ୍ୟାକାରୀ ଦ୍ୱୟ ଗୁଳିଶୂନ୍ୟ ଅସ୍ତ୍ରକୁ ତଳେ ପକାଇଦେଇ ଦୁଇ ହାତ ଟେକି ଆତ୍ମସମର୍ପଣ କଲେ । ସେଠାରେ ଉପସ୍ଥିତ ଥିବା ଇଣ୍ଡୋ-ତିବ୍ବତ୍ ସୀମାନ୍ତରକ୍ଷୀ ପୁଲିସ କମାଣ୍ଡୋମାନେ ସଙ୍ଗେ ସଙ୍ଗେ ଆତତାୟୀଙ୍କୁ କାବୁ କରିନେଇ ୫୦ ମିଟର ଦୂରରେ ଥିବା ଗାର୍ଡରୁମ୍‌ରେ ରଖିଲେ । ଆତତାୟୀ ଦ୍ୱୟ ନଜରବନ୍ଦରେ ଅଛନ୍ତି ମନେକରି ସମସ୍ତେ ନିଜ ନିଜ କାମରେ ଲାଗି ରହିଲେ ।

ଅତ୍ୟନ୍ତ ଦୁର୍ଭାଗ୍ୟର କଥା । ପ୍ରଧାନମନ୍ତ୍ରୀଙ୍କ ଜରୁରୀ ବ୍ୟବସ୍ଥା ପାଇଁ ପ୍ରସ୍ତୁତ ଥିବା ଆମ୍ବୁଲେନ୍‌ସ୍ ସେତେବେଳେ କାର୍ଯ୍ୟରେ ଲଗାଯାଇ ପାରିଲା ନାହିଁ । ସେଥିରେ ଅତ୍ୟାବଶ୍ୟକୀୟ ଯନ୍ତ୍ରପାତିରେ ସୁସଜ୍ଜିତ କରାଯାଇଥିଲା ।

ହଠାତ୍ ଇନ୍ଦିରାଙ୍କୁ କିଛି ପ୍ରାଥମିକ ଚିକିତ୍ସା କରାଯାଇପାରିଲା ନାହିଁ । ଡାକ୍ତର ଓପାଇ ପହଞ୍ଚି ତାଙ୍କୁ ଶୀଘ୍ର ଇଣ୍ଡିଆନ୍ ଇନ୍‌ଷ୍ଟିଚ୍ୟୁଟ ଅଫ୍ ମେଡ଼ିକାଲ୍ ସାଇନ୍‌ସକୁ ନେବାକୁ ସ୍ଥିର କଲେ ।

ପ୍ରସ୍ତୁତ ଥିବା ଆମ୍ବୁଲେନ୍‌ସ୍ ସେଠାରେ ନ ଥିବାରୁ ଏକ ସାଧାରଣ ଆମ୍ବାସାଡ଼ର୍ କାର୍‌ରେ ଇନ୍ଦିରା ଗାନ୍ଧୀଙ୍କୁ ନିଆଗଲା ।

ତାଙ୍କୁ ଶ୍ରୀ ଆର୍. କେ ଧାୱନ୍, ଶ୍ରୀ ଯଶପାଲ କପୁର ଓ ଡ଼ାକ୍ତର ଓପାଇ ମିଶି କାର୍ ଭିତରକୁ ଟେକି ନେଲେ ।

ଗୁଳିଶବ୍ଦ ଶୁଣି ଶ୍ରୀ ରାଜୀବ ଗାନ୍ଧୀଙ୍କ ସ୍ତ୍ରୀ ସୋନିଆଁ ଗାନ୍ଧୀ ଘଟଣା ସ୍ଥଳରେ ପହଞ୍ଚିଗଲେ । ସେ ନିଜ କୋଳରେ ଇନ୍ଦିରାଙ୍କ ମୁଣ୍ଡକୁ ରଖି କାରରେ ବସିଲେ ।

ଇନ୍ଦିରା ଗାନ୍ଧୀଙ୍କ ଗୁଳିବିଦ୍ଧ ଶରୀରକୁ ନେଇ କାର୍‌ଟି ୪-୫ କି: ମି: ରାସ୍ତା ଅତିକ୍ରମ କରି ଅଲ୍ ଇଣ୍ଡିଆ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ମେଡ଼ିକାଲ ସାଇନ୍‌ସଠାରେ ପହଞ୍ଚିଲା । କାର୍‌ରୁ ବାହାର କରି ତାଙ୍କୁ ଷ୍ଟ୍ରେଚରରେ ନିଆଯାଇ ଖଣ୍ଡିଏ କମଳ ଧଳା ଘୋଡ଼ାଇ ଦିଆ ଯାଇଥିଲା । ସେତେବେଳେ ଇନ୍ଦିରାଙ୍କର ଆଖି ଦୁଇଟି ଖୋଲା ଥିଲା । ସେଠାରେ ଉପସ୍ଥିତ ଥିବା ଜୁନିଅର୍ ଡାକ୍ତରମାନେ ସ୍ୱୟଂ ପ୍ରଧାନମନ୍ତ୍ରୀଙ୍କ ଏଭଳି ଅବସ୍ଥା ଦେଖି ଘାବରେଇ ଗଲେ । ସେମାନେ ସାହସର ସହ ପରୀକ୍ଷା ଆରମ୍ଭ କରିବା ସଙ୍ଗେ ସଙ୍ଗେ ପୁରୁଖା ବିଚକ୍ଷଣ ଡାକ୍ତରମାନଙ୍କୁ ଖବର ଦେଲେ ।

ଅଳ୍ପ ସମୟ ମଧ୍ୟରେ ସବୁ ବଡ଼ ବଡ଼ ଡାକ୍ତର ଆସି ଘଟଣା ସ୍ଥଳରେ ପହଞ୍ଚି, ଆଠ ମହଲାରେ ଥିବା ନଂ ୨ ଅପରେସନ୍ ଥିଏଟରକୁ ତାଙ୍କୁ ନେଇଗଲେ । ପୂର୍ବ ନିର୍ଦ୍ଧାରିତ ସମସ୍ତ କାର୍ଯ୍ୟକ୍ରମ ବାତିଲ କରି ପ୍ରଧାନମନ୍ତ୍ରୀଙ୍କ ଶରୀରରୁ ପ୍ରଥମେ ଗୁଳିଗୁଡ଼ିକୁ ବାହାର କରିଦେଲେ । ତାଙ୍କ ଶରୀର ପ୍ରଚୁର ରକ୍ତସ୍ରାବ ହୋଇ ଯାଇଥାଏ ।

କେତେକ ଡାକ୍ତରଙ୍କ ମତରେ ଇନ୍ଦିରା ଗାନ୍ଧୀ ସେଠାରେ ପହଞ୍ଚିବା ପୂର୍ବରୁ ମରି ଯାଇଥିଲେ । କାରଣ ତାଙ୍କର ନାଡ଼ି

ଚାଲୁ ନଥିଲା ଓ ଅକ୍ସିଜେନ୍ କିଛି କାମ କରୁ ନଥିଲା । ଶରୀର ମଧ୍ୟକୁ ଅମ୍ଳଜାନ ଓ ରକ୍ତ ଯୋଗାଇ ଦେବାକୁ ହାର୍ଟଲଙ୍ଗ୍ ବାଇପାସ୍ ଯନ୍ତ୍ର ଚେଷ୍ଟା ଯାଉଥିଲା । ଫଳରେ ତାଙ୍କ ଶରୀରର ଶୀତଳଶୀତରେ ରକ୍ତ ସଞ୍ଚାଳନକୁ ଚାଲୁ ରଖା ଯାଉଥିଲା ।

ଅପରେସନ୍ ଥିଏଟର ବାହାରେ ସୋନିଆ ଓ ଇନ୍ଦିରାଙ୍କ ନାତି ନାତୁଣୀଙ୍କ ସହ ଅନ୍ୟମାନେ ଅପେକ୍ଷା କରିଥିଲେ ।

ଇନ୍ଦିରା ଗାନ୍ଧୀଙ୍କ ଉପରେ ଗୁଳି ଚଳନାର ସମ୍ବାଦ ମୁହୂର୍ତ୍ତକ ମଧ୍ୟରେ ବିଦ୍ୟୁତ୍ ବେଗରେ ସାରା ବିଶ୍ୱରେ ପହଞ୍ଚିଗଲା । ବହୁ ଦେଶୀୟ ଓ ବିଦେଶୀ ନେତାମାନେ ହତ୍ୟା ଉଦ୍ୟମର ଘୋର ନିନ୍ଦା କରି ଇନ୍ଦିରାଙ୍କ ଶୀଘ୍ର ଆରୋଗ୍ୟ କାମନା କରି ସମ୍ବାଦମାନ ପ୍ରେରଣ କଲେ ।

ସେତେବେଳେ ପାକିସ୍ତାନରେ ଭାରତୀୟ କ୍ରିକେଟ ଦଳ ଯାଇ ଖେଳୁଥାନ୍ତି । ଆକାଶବାଣୀ ଦ୍ୱାରା ଏହାର ପ୍ରତ୍ୟକ୍ଷଦର୍ଶୀ ଧାରା ବିବରଣୀ ପ୍ରସାର ହଠାତ୍ ବନ୍ଦ କରିଯାଇ ଏହି ଦୁଃସମ୍ବାଦ ସାରା ଦୁନିଆକୁ ଜଣାଇ ଦିଆଗଲା ।

ଭାରତର ଜନତା ଆତଙ୍କିତ ହୋଇ ପଡ଼ିଲେ । ତାଙ୍କର ପ୍ରିୟ ପ୍ରଧାନମନ୍ତ୍ରୀଙ୍କ ଦୁଃସମ୍ବାଦ ଶୁଣି ତାଙ୍କୁ ଦେଖା କରିବା ପାଇଁ ଲକ୍ଷ ଲକ୍ଷ ଜନତାଙ୍କର ପ୍ରବଳ ଭିଡ଼ ଜମିଗଲା । ଜନତା ଭିଡ଼ ସମ୍ଭାଳିବା ଅସମ୍ଭବ ମନେ ହେଲା ।

ଘଣ୍ଟା ଘଣ୍ଟା ଧରି ଇନ୍ଦିରାଙ୍କ ବିଷୟରେ କୌଣସି ସମ୍ବାଦ ଆକାଶବାଣୀ ପ୍ରଚାର ନକରିବାରୁ ଜନତାଙ୍କ ମନରେ ସନ୍ଦେହ

ସୃଷ୍ଟି କଲା । ସେମାନେ ବାରମ୍ବାର ବି. ବି. ସି. ଲଣ୍ଡନ, ଭଏସ ଅଫ୍ ଆମେରିକା ଓ ବିଭିନ୍ନ ବେତାର କେନ୍ଦ୍ରରୁ ଇନ୍ଦିରାଙ୍କ ସମ୍ପର୍କରେ ସମ୍ବାଦ ଶୁଣିବାରେ ଲାଗିଲେ ।

ଅକ୍ଳାନ୍ତ ପରିଶ୍ରମ କରି ଡାକ୍ତରମାନେ ଇନ୍ଦିରାଙ୍କୁ ବଞ୍ଚାଇବା'କୁ ଚେଷ୍ଟା କରୁଥାନ୍ତି ।

ବାହାରେ ଜନତା ଭିଡ଼ ସବୁ ବେଳେ ବଢ଼ ବଢ଼ ନେତା ଓ ଇନ୍ଦିରାଙ୍କ ଲାଖ ଲୋକ ଓ ଉଚ୍ଚପଦସ୍ଥ ଅଫିସରମାନଙ୍କର ଭିଡ଼ ପ୍ରବଳରୁ ପ୍ରବଳତର ହେଉଥାଏ ।

ସମସ୍ତେ ଇନ୍ଦିରାଙ୍କ ବିଷୟରେ ଜାଣିବାକୁ ବ୍ୟାକୁଳତା ପ୍ରକାଶ କରୁଥାନ୍ତି ।

ଅପରେସନ୍ ଥିଏଟର ଭିତରୁ ଧୀରେନ୍ଦ୍ର ବ୍ରହ୍ମଚାରୀ ଫେରିଲେ । ତାଙ୍କୁ ସମସ୍ତେ ଘେରିଗଲେ—"କ'ଣ ଖବର ?"

ଧୀରେନ୍ଦ୍ର ବ୍ରହ୍ମଚାରୀ କହିଲେ— "Worst than serious" ଅର୍ଥାତ୍—ସାଙ୍ଘାତିକ ଅବସ୍ଥାକୁ ବଳି ପଡ଼ିଛି ।

ଦିନ ୨ଟା ୩ ମିନିଟରେ ଡାକ୍ତରମାନେ ଇନ୍ଦିରାଙ୍କୁ ମୃତ ବୋଲି ଘୋଷଣା କଲେ । ଏ' ସମ୍ବାଦ ସାରା ଦେଶରେ ହଇଚଇ ସୃଷ୍ଟି କରିଦେଲା ।

ଇନ୍ଦିରା ଗାନ୍ଧୀଙ୍କର ଏକମାତ୍ର ପୁତ୍ର ରାଜୀବ ଗାନ୍ଧୀ ସେତେବେଳେ ଅନ୍ୟ କେତେଜଣ କଂଗ୍ରେସ୍ ମନ୍ତ୍ରୀଙ୍କ ସହ ପଶ୍ଚିମବଙ୍ଗ ଗସ୍ତରେ ଥାନ୍ତି । ଏଣେ ଭାରତର ରାଷ୍ଟ୍ରପତି ମଧ୍ୟ ମରିସସ୍ ଗସ୍ତରେ ଥାନ୍ତି । ସମସ୍ୟା ଅତି ଜଟିଳ ହୋଇ ପଡ଼ିଲା ।

ରାଜୀବ ଓ ରାଷ୍ଟ୍ରପତିଙ୍କୁ ଯଥାଶୀଘ୍ର ସମ୍ଭବ ଦିଲ୍ଲୀ ଫେରି ଆସିବାକୁ ଖବର ଦିଆଗଲା ।

ଦିଲ୍ଲୀର ନଗରପାଳିକୁ ଯୁଦ୍ଧକାଳୀନ ଭିତ୍ତିରେ କଡ଼ା କରି ଦିଆଗଲା ।

ଏଣେ ଆତତାୟୀଦ୍ୱୟ ସୀମାନ୍ତରକ୍ଷୀମାନଙ୍କ କାବୁରେ ନଜରବନ୍ଦରେ ଅଛନ୍ତି, ବୋଲି ମନେକରି ସମସ୍ତେ ଧାଁ ଧାପଡ଼ରେ ଲାଗିଥାନ୍ତି ।

କିଛି ସମୟ ପରେ ହଠାତ୍ ସେଠାରୁ ଗୁଳିଶବ୍ଦ ଶୁଭିଲା । ହତ୍ୟାକାରୀ ବିଅନ୍ତ ଓ ସତ୍‌ବନ୍ତ ରକ୍ତାକ୍ତ ଅବସ୍ଥାରେ ତଳେ ଗଡ଼ି ପଡ଼ିଥିଲେ । ପରେ ସେଠାରେ ୧୯ଟି ଗୁଳି ଫୁଟି ପଡ଼ିଥିବାର ଜଣା ପଡ଼ିଲା । ଏମାନଙ୍କୁ କାହିଁକି ଗୁଳି କରାଗଲା ? ତାହା ଦୀର୍ଘ ୩ ମାସ ପର୍ଯ୍ୟନ୍ତ ରହସ୍ୟାବୃତ ଅଛି ।

ଗୁଳି କରିବାର କାରଣ ପଚାରିବାରୁ ରକ୍ଷୀମାନେ କହିଛନ୍ତି ଯେ, "ଆତତାୟୀମାନେ କହିଥିଲେ, ଆମେ ଆମର କାମ ଶେଷ କରିଛୁ । ତୁମର ଯାହା ଇଚ୍ଛା କର । ଏହାପରେ ବିଅନ୍ତ ଗୋଟାଏ ଗୁଳିଭରା ଷ୍ଟେନ୍‌ଗନ୍‌କୁ ଝାମ୍ପି ନେବାର ଉଦ୍ୟମ କରୁଥିବାରୁ ତାକୁ ଗୁଳି କରିବାକୁ ବାଧ୍ୟ ହେଲୁ ।" ଏହା ପଛରେ କିଛି କାରଣ ଥିବାର ଅନୁମାନ କରାଯାଉଛି ।

ପ୍ରଧାନମନ୍ତ୍ରୀଙ୍କ ପାଇଁ ସ୍ୱତନ୍ତ୍ର ଭାବେ ନିର୍ମିତ ଯନ୍ତ୍ରପାତି ସୁସଜ୍ଜିତ ଆମ୍ବୁଲାନ୍‌ସରେ ବିଅନ୍ତ ଓ ସତ୍‌ବନ୍ତଙ୍କୁ ଭର୍ତ୍ତି କରି ରାମମନୋହର ଲୋହିଆ ଚିକିତ୍ସାଳୟକୁ ନିଆଗଲା । ରାସ୍ତାରେ

ବାସ୍ତବ ମରି ଯାଇଥିଲା । ସେତେବେଳେ ଶରୀରରୁ ୭ଟି ଗୁଳି ବାହାର କରି ଅପରେସନ୍ କରାଗଲା ।

ଅପରାହ୍ନ ୪ଟା ୩୬ ମିନିଟରେ ଶ୍ରୀ ରାଜୀବ ଗାନ୍ଧୀ ଦିଲ୍ଲୀରେ ପହଞ୍ଚିଲେ । ଇନ୍ଦିରାଙ୍କ ମୃତ ଶରୀରକୁ ଦର୍ଶନ ପାଇଁ କାହାରିକୁ ଅନୁମତି ଦିଆଗଲା ନାହିଁ । କାରଣ ଇନ୍ଦିରାଙ୍କ ଶରୀରରେ ଏତେ ପରିମାଣରେ ନିକଟରୁ ଗୁଳି କରାଯାଇଥିବାରୁ ତାଙ୍କର ଶରୀରରେ ବଡ଼ ବଡ଼ ଭୟଙ୍କର ଖାଲ ହୋଇ ଯାଇଥିଲା । ଏଭଳି ବିକୃତ ଅବସ୍ଥା ଦେଖି ସେ କେହି ସାଧାରଣ ମଣିଷ ଭୟ କରିଯାଇପାରେ । ଡାକ୍ତରମାନେ ଆବଶ୍ୟକୀୟ ଔଷଧପତ୍ର ଦେଇ ସିଲେଇ କାମ ଶେଷ ପରେ ଶବ ଦର୍ଶନ ପାଇଁ ଅନୁମତି ପ୍ରଦାନ କଲେ ।

ରାଷ୍ଟ୍ରପତି ଏ ଦୁଃସମ୍ବାଦ ପାଇ ସମସ୍ତ କାର୍ଯ୍ୟକ୍ରମ ବାତିଲ କରି ୟେମେନ ଗସ୍ତରୁ ଦିଲ୍ଲୀରେ ପହଞ୍ଚି ସିଧା ଇଣ୍ଡିଆନ୍ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ମେଡ଼ିକାଲ ସାଇନ୍‌ସକୁ ଗଲେ । ସେତେବେଳେ ପର୍ଯ୍ୟନ୍ତ ଭାରତର ଆକାଶବାଣୀ ଓ ଦୂରଦର୍ଶନ ନୀରବ ରହିଥିଲେ ।

ରାଷ୍ଟ୍ରପତି ବିଧିବଦ୍ଧ ଭାବେ ଭାରତର ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧୀ ମୃତ ବୋଲି ଘୋଷଣା କଲେ ।

ସେଦିନ ପାର୍ଲିଆମେଣ୍ଟରେ ଏକ ଜରୁରୀ ବୈଠକ ଡକାଯାଇ ଶ୍ରୀ ରାଜୀବ ଗାନ୍ଧୀଙ୍କୁ ଦଳର ନେତା ଭାବରେ ବାଛି ଥିଲେ । ରାଷ୍ଟ୍ରପତି ଜ୍ଞାନୀ ଜୈଲ ସିଂହ ତାଙ୍କୁ ପ୍ରଧାନମନ୍ତ୍ରୀ ପଦରେ

ଶପଥ ପାଠ କରାଇଲେ । ୧୨ ଦିନ ସାରା ଦେଶରେ ଶୋକ ପାଳନ ପାଇଁ ସ୍ଥିର ହେଲା ।

ଇନ୍ଦିରା ଗାନ୍ଧୀ ବିଶ୍ୱର ଜଣେ ସମ୍ମାନିତା ନେତା ତଥା ଶ୍ରେଷ୍ଠ ମହିଳା ଓ ଗୋଷ୍ଠୀ ନିରପେକ୍ଷ ସମ୍ମିଳନୀର ଅଧ୍ୟକ୍ଷା ଥିବାରୁ ସାରା ବିଶ୍ୱର ନେତା ତାଙ୍କର ଶେଷ ସମ୍ମାନ ପ୍ରଦର୍ଶନ କରିବେ । ତେଣୁ ତାଙ୍କର ଶବ ସତ୍କାର ଉଠାଇ ନଭେମ୍ବର ୩ ତାରିଖ ଦିନ କରିବାକୁ ସ୍ଥିର କରାଗଲା ।

ତିନିମୂର୍ତ୍ତି ଭବନଠାରେ ଇନ୍ଦିରା ଗାନ୍ଧୀଙ୍କର ମର ଶରୀରକୁ ରାଷ୍ଟ୍ରୀୟ ସମ୍ମାନ ସହ ତିରଙ୍ଗା ପତାକା ଦ୍ୱାରା ସୁସଜ୍ଜିତ କରି ସର୍ବସାଧାରଣଙ୍କ ଦର୍ଶନ ଓ ଶ୍ରଦ୍ଧାଞ୍ଜଳୀ ଅର୍ପଣ କରିବାକୁ ରଖାଗଲା । ବିଶ୍ୱର ତଥା ଦେଶର ବହୁ ବଡ଼ ବଡ଼ ନେତା ଇନ୍ଦିରାଙ୍କୁ ଶେଷ ଶ୍ରଦ୍ଧାଞ୍ଜଳୀ ପ୍ରଦାନ କଲେ ।

## ଇନ୍ଦିରା ଗାନ୍ଧୀଙ୍କ ମହାଯାତ୍ରା :

ତିନିମୂର୍ତ୍ତି ଭବନରେ ଇନ୍ଦିରାଙ୍କ ମର ଶରୀର ଦର୍ଶନ କାର୍ଯ୍ୟ ଶନିବାର ୩ ତାରିଖ ସକାଳ ୭ଟାରୁ ବନ୍ଦ କରି ଦିଆଗଲା । ଇନ୍ଦିରା ଗାନ୍ଧୀଙ୍କର ଅନ୍ତିମ ଯାତ୍ରା ପାଇଁ ପ୍ରସ୍ତୁତିପର୍ବ ଆରମ୍ଭ କରାଗଲା । ୧୨ଟା ୩୦ ମିନିଟରେ ଶ୍ରୀ ରାଜୀବ ଗାନ୍ଧୀ ଓ ଭାରତସେନାର ମୁଖ୍ୟ ଶବାଧାରକୁ ଫୁଲରେ ସୁସଜ୍ଜିତ ତୋପ ଓ୍ୟାଗନ୍‌ରେ ରଖିଥିଲେ । ଦ୍ୱାରଜୀରୁ ସଶସ୍ତ୍ରବାହିନୀ ସମ୍ମାନ ପ୍ରଦର୍ଶନ କଲେ । ଏହି ଗାଡ଼ିକୁ ୯୦ ଜଣ ସୈନ୍ୟ ଟାଣିଟାଣି ଇନ୍ଦିରାଙ୍କ ମହାଯାତ୍ରା ଆରମ୍ଭ କଲେ ।

ତିନିମୂର୍ତ୍ତି ଭବନରୁ ୧୪ କି: ମି: ଦୂର ଶାନ୍ତିବନ ପର୍ଯ୍ୟନ୍ତ ଲକ୍ଷ ଲକ୍ଷ ଶୋକାକୁଳ ଜନତା ରାସ୍ତାରେ ଇନ୍ଦିରାଙ୍କୁ ଶେଷ ଶ୍ରଦ୍ଧାଞ୍ଜଳୀ ଓ ପୁଷ୍ପାଞ୍ଜଳୀ ଅର୍ପଣ କଲେ । ସେହି ଗାଡ଼ି ପଛରେ ନୂତନ ପ୍ରଧାନମନ୍ତ୍ରୀ ରାଜୀବ ଗାନ୍ଧୀ ତାଙ୍କର ପରିବାରବର୍ଗଙ୍କ ସହ ଏକ ଧଳା ଗାଡ଼ିରେ ବସି ଯାଉଥାନ୍ତି । ତାଙ୍କ ପଛରେ ରାଷ୍ଟ୍ରପତି ଓ ଆହୁରି ବଡ଼ ବଡ଼ ନେତା ଓ ମନ୍ତ୍ରୀ ତଥା ବିଭିନ୍ନ ଦେଶର ପ୍ରତିନିଧିଙ୍କର ଗାଡ଼ି ଯାଉଥାଏ । ଅପୂର୍ବ ଥିଲି ଏ ମହାଯାତ୍ରାର କରୁଣ ଦୃଶ୍ୟ ।

ଶାନ୍ତିବନଠାରେ ଚିତା ପାଇଁ ଏକ ଉଚ୍ଚ ବେଦି ବନ୍ଧା ଯାଇଥାଏ । ତିନି ସେନାର ମୁଖ୍ୟ ଶବବାହକ ଭାବେ ଇନ୍ଦିରାଙ୍କୁ ନେଇ ଚିତା ଉପରେ ରଖିଲେ ।

ଶ୍ରୀ ରାଜୀବ ଗାନ୍ଧୀ ଚିତାରେ ଅଗ୍ନି ସଂଯୋଗ କଲେ । ବ୍ରାହ୍ମଣମାନଙ୍କ ବେଦପାଠ, ମନ୍ତ୍ରଧ୍ୱନିରେ ଶାନ୍ତିବନ ଉଚ୍ଛୁଳି ପଡ଼ିଲି । ସୈନ୍ୟବାହିନୀ ନିଜର ଅସ୍ତ୍ରକୁ ଅର୍ଦ୍ଧନମିତ କରି ସମ୍ମାନ ପ୍ରଦର୍ଶନ କଲେ । ଧୂହୁଁ ଧୂହୁଁ ଇନ୍ଦିରାଙ୍କ ଶରୀର ପୋଡ଼ି ଭସ୍ମରେ ପରିଣତ ହୋଇଗଲି ।

ଏହି ଅନ୍ତିମ ସଂସ୍କାର ସମୟରେ ନିଜର ସମବେଦନା ଓ ସମ୍ମାନ ଜଣାଇବା ପାଇଁ ୧୦୨ଟି ଦେଶର ରାଷ୍ଟ୍ରମୁଖ୍ୟ ,ଓ ପ୍ରତିନିଧି ଯୋଗ ଦେଇଥିଲେ ।

ତା ପରଦିନ ଅଗ୍ନି ଶୀତଳ କରାଗଲି । ଶ୍ରୀ ରାଜୀବ ଗାନ୍ଧୀ ୩୫ଟି ତମ୍ବା କଳସୀରେ ପବିତ୍ର ଭସ୍ମ ସଂଗ୍ରହ କରି ଭାରତର ବିଭିନ୍ନ ସ୍ଥାନର ଜନତାଙ୍କ ଶ୍ରଦ୍ଧାଞ୍ଜଳୀ ପାଇଁ ପ୍ରେରଣ କଲେ ।

ଇନ୍ଦିରା ଗାନ୍ଧୀଙ୍କର ଅଭିଳାଷ ଥିଲା, ସେ ଯେଣ ପାହାଡ଼ି ଘେରା ବରଫାବୃତ ହିମାଳୟରେ ଶେଷ ଜୀବନ କଟାଇବେ । ତେଣୁ ଶ୍ରୀ ରାଜୀବ ଗାନ୍ଧୀ ନଭେମ୍ବର ମାସ ୯ ତାରିଖରେ ସ୍ୱତନ୍ତ୍ର ବିମାନ ଯୋଗେ କଳସୀ ନେଇ ଇନ୍ଦିରାଙ୍କ ଇଚ୍ଛାନୁସାରେ ହିମାଳୟ ଉପରେ ଭସ୍ମ ବୁଣିଦେଇ ଆସିଲେ ।

ଇନ୍ଦିରା ଯୁଗର ପରିସମାପ୍ତି ଘଟିଲା ।

## ହତ୍ୟାକାରୀଙ୍କ ପରିଚୟ

ଇନ୍ଦିରା ଗାନ୍ଧୀଙ୍କୁ ହତ୍ୟାକାରୀ ଭାବେ କୁଖ୍ୟାତ ଲାଭ କରିଥିବା ଦୁଇଜଣ ଦେହରକ୍ଷୀଙ୍କ ମଧ୍ୟରୁ ସବଇନସ୍‌ପେକ୍ଟର ବିଅନ୍ତ ସିଂର ବୟସ ତିରିଶ । ସେ ଜଣେ ମାଜ୍‌ହାବୀ ଶିଖ୍ ହରିଜନ ସମ୍ପ୍ରଦାୟର ଲୋକ । ୧୯୭୨ରେ ସେ ଦିଲ୍ଲୀ ପୋଲିସ୍‌ରେ ଯୋଗ ଦେଇଥିଲେ । ଏହାର ୪ ବର୍ଷ ପରେ ସେ ଭି. ଆଇ. ପି. ନିରାପତ୍ତା ବାହିନୀରେ ମିଶିଥିଲେ । ୧୯୮୦ରେ ପ୍ରଧାନମନ୍ତ୍ରୀଙ୍କ ନିରାପତ୍ତା ବାହିନୀରେ ଯୋଗ ଦେଇ ଦୁଇଥର ତାଲିମ ପାଇଥିଲେ । ଶ୍ରୀମତୀ ଗାନ୍ଧୀଙ୍କ ଗତ ଲଣ୍ଡନ ଯାତ୍ରା ସମୟରେ ସେ ତାଙ୍କର ନିରାପତ୍ତା ରକ୍ଷୀ ଭାବରେ ତାଙ୍କ ସହିତ ଯାଇଥିଲେ । ସେ ଜଣେ ଅତି ବିଶ୍ୱସ୍ତ ରକ୍ଷୀ ଥିବାରୁ ପ୍ରଧାନମନ୍ତ୍ରୀଙ୍କ ଶୟନକକ୍ଷ ବାହାରେ ପହରା ଦେବାକୁ ନିଯୁକ୍ତି ପାଇଥିଲେ ।

ବିଅନ୍ତ ସିଂଙ୍କୁ ଇନ୍ଦିରା ଗାନ୍ଧୀ ସବୁଠାରୁ ବେଶୀ ବିଶ୍ୱାସ କରୁଥିଲେ । ତାଙ୍କର ସ୍ତ୍ରୀ ଦିଲ୍ଲୀର ରାମ ମନୋହର ଲୋହିଆ ଡାକ୍ତରଖାନାରେ ନର୍ସ ଭାବେ କାମ କରନ୍ତି । ହତ୍ୟା ଘଟଣାର

କାଷ୍ଟିଭନ ପୂର୍ବରୁ ତାଙ୍କ ସ୍ତ୍ରୀ ସହ ମତାନ୍ତର ଘଟିଥିଲା । ବିଅନ୍ତ ୩ଟି ସନ୍ତାନର ଜନକ ।

ପ୍ରଧାନମନ୍ତ୍ରୀଙ୍କୁ ହତ୍ୟା କରିବା ଦିନ ବିଅନ୍ତ ସିଂ ଅପରାହ୍ଣରୁ ତାଙ୍କ ଡ୍ୟୁଟି ବଦଳାଇଥିଲେ । ସାଦା ପୋଷାକ ପିନ୍ଧି ଏକ ଟ୍ରଏଣ୍ଟ ୩୮ ରିଭଲଭର ଧରି ଟି. ଏମ୍. ସି. ଗେଟ୍ ନିକଟରେ ଅପେକ୍ଷା କରିଥିଲେ ।

ଦ୍ୱିତୀୟ ହତ୍ୟାକାରୀଭାବେ ସତବନ୍ତ ସିଂ କୁଖ୍ୟାତ ଅର୍ଜନ କରିଛନ୍ତି । ସେ ପଞ୍ଜାବର ପାକିସ୍ତାନ ସୀମାନ୍ତବର୍ତ୍ତୀ ଗୁରୁଦାସପୁର ଜିଲ୍ଲାର ଜଣେ ଶିଖ୍ ଯୁବକ । ୧୯୮୨ରେ ସେ ଦିଲ୍ଲୀ ପୋଲିସବାହିନୀରେ ଯୋଗ ଦେଇଥିଲେ । ସେ ସ୍ୱତନ୍ତ୍ରଭାବେ କମାଣ୍ଡୋ ତାଲିମ ପାଇଥିଲେ ।

ପ୍ରଧାନମନ୍ତ୍ରୀଙ୍କୁ ହତ୍ୟା କରିବା ପାଇଁ ସେ ଶପଥ ନେଇଥିଲେ । ତେଣୁ ସୁବିଧା ପାଇଁ ଡ୍ୟୁଟି ସମୟ ପରିବର୍ତ୍ତନ କରି ଦ୍ୱିତୀୟ ହତ୍ୟାକାରୀ ହେବାର ସୁଯୋଗ ପାଇଲେ ।

ସୁଖର କଥା—ଇନ୍ଦିରା ଗାନ୍ଧୀଙ୍କ ହତ୍ୟାର ମୂଳ କାରଣ ଜାଣିବାରେ ସାହାଯ୍ୟ କରିବା ପାଇଁ ସେ ଜୀବନ ଧରି ରହିଛନ୍ତି । ଦେହରକ୍ଷୀଙ୍କ ଗୁଳିରେ ସେ ଆହତ ହୋଇ ରାମ ମନୋହର ଲୋହିଆ ଡାକ୍ତରଖାନାରେ ଚିକିତ୍ସା ହୋଇ ସମ୍ପୂର୍ଣ୍ଣ ଭଲ ହୋଇଛନ୍ତି । ତାଙ୍କୁ ଜେରା କରାଯାଇ କେତେକ ଗୁରୁତ୍ୱପୂର୍ଣ୍ଣ ତଥ୍ୟ ଓ ଅସଲ ହତ୍ୟାର କାରଣମାନ ସଂଗ୍ରହ କରାଯାଉଛି । ସତବନ୍ତ ମରି ଯାଇଥିଲେ ବହୁ ଗୁପ୍ତ ତଥ୍ୟ ପ୍ରକାଶ ପାଇପାରି ନଥାନ୍ତା । ବର୍ତ୍ତମାନ ତାଙ୍କ ଦ୍ୱାରା ବହୁ ରହସ୍ୟ ଉଦ୍‌ଘାଟିତ ହେଉଛି । ଏହାର ଶେଷ ପରିଣାମ କ'ଣ ହେବ ଲୋକେ ଚାହିଁ ବସିଛନ୍ତି ।

# ଇନ୍ଦିରା ଗାନ୍ଧୀଙ୍କ ନିଜ କଥା

ସ୍ୱର୍ଗୀୟା ଇନ୍ଦିରା ଗାନ୍ଧୀଙ୍କ ସମ୍ପର୍କରେ ବହୁ ପୁସ୍ତକ ପ୍ରକାଶ ପାଇଛି । ରାଷ୍ଟ୍ରନୀତିଜ୍ଞ ସ୍ୱଭାବରେ ସେ ଜଣେ ବହୁଚର୍ଚ୍ଚିତା ବ୍ୟକ୍ତିତ୍ୱ ହୋଇଥିବାରୁ ତାଙ୍କୁ ବହୁ ସମୟରେ ବହୁ ସାମ୍ବାଦିକ ତାଙ୍କର ନିଜସ୍ୱ ଚିନ୍ତାଧାରା ସମ୍ପର୍କରେ ଜାଣିବାକୁ ଇଚ୍ଛା ପ୍ରକାଶ କରିଛନ୍ତି । ସେ ବିଭିନ୍ନ ସମୟରେ ସାମ୍ବାଦିକମାନଙ୍କୁ ନିଜ ସମ୍ପର୍କରେ ଯାହା କହିଛନ୍ତି :—

★ ମୁଁ ଝରଣା ଥିବା ପାହାଡ଼ିଆ ଜାଗା ଝଙ୍କାଳିଆ ଗଛ ପାଖରେ ରହିବାକୁ ଭଲ ପାଏ ।

★ ମୋର ଶେଷ ଜୀବନ ହିମାଳୟରେ କାଟିବାକୁ ଚାହେଁ ।

★ ମୋ ପାଇଁ ସବୁଠାରୁ ଦୁର୍ଭାଗ୍ୟର ବିଷୟ ହେଉଛି— ମୋର କେହି ପ୍ରିୟଜନଙ୍କର ମୃତ୍ୟୁ ଘଟଣା ।

★ ଜନସାଧାରଣଙ୍କ ସହ ଏକାତ୍ମବୋଧ ହେଉଛି ମୋ ଚରିତ୍ରର ସବୁଠାରୁ ବଳିଷ୍ଠ ଦିଗ ।

★ ମୋ ଜୀବନରେ ଏଭଳି କେତେକ ମୁହୂର୍ତ୍ତ ଆସିଛି, ସେତେବେଳେ ମୁଁ ଗଭୀର ପରିତୃପ୍ତିର ଆସ୍ୱାଦ ପାଇଛି ।

★ ମୁଁ କୌଣସି ମହାପୁରୁଷଙ୍କ ପରି ହେବାକୁ ଚାହେଁ ନାହିଁ । ନିଜ ପରି ନିଜକୁ ଗଢ଼ିବାକୁ ଚାହେଁ ।

☆ ନିଜକୃତାଘାତ ଯୋଗୁଁ ଯଦି କେହି କିଛି କ୍ଷତି କରିଦିଏ, ମୁଁ ତାକୁ ଭୁଲି ଯାଇଥାଏ ।

☆ ପଢ଼ିବା, ପାହାଡ଼ ଚଢ଼ିବା ଓ ଜଙ୍ଗଲରେ ବୁଲିବା ମୋର ସଉକ ।

☆ ନାରୀ ଓ ପୁରୁଷ ନିର୍ବିଶେଷରେ ନୈତିକ, ବୌଦ୍ଧିକ ଓ ଶାରୀରିକ ସାହସକୁ ମୁଁ ସମ୍ମାନ ଦିଏ ।

☆ ଭାରତୀୟ ଦାର୍ଶନିକ, ସାଧୁସନ୍ଥ ଓ ଶଙ୍କରାଚାର୍ଯ୍ୟ ପ୍ରଭୃତିଙ୍କ ଇତିହାସର ବ୍ୟକ୍ତିତ୍ୱ ମୋ ପାଇଁ ପ୍ରିୟ ।

☆ ମାନବର ଆନ୍ତରିକତା ଓ ଅନ୍ୟକୁ ସାହାଯ୍ୟ କରିବା ଗୁଣକୁ ମୁଁ ଭଲ ପାଏ ।

☆ ମୁଁ ବର୍ତ୍ତମାନ ବିଶ୍ୱ ପରିସ୍ଥିତି ନେଇ ଚିନ୍ତିତ ।

☆ ଭାରତର ସ୍ୱାଧୀନତା ଓ ସଂହତି ପ୍ରତି ବିପଦ ସୃଷ୍ଟିକାରୀ ହେଉଛନ୍ତି ମୋର ଶତ୍ରୁ ।

★ ମୁଖ୍ୟତଃ ମୋତେ ସବୁଜ, ଘନ, ନୀଳାଭ ବର୍ଣ୍ଣ ଓ ପରିବର୍ତ୍ତନଶୀଳ ପତ୍ରଗୁଡ଼ିକର ସ୍ୱର୍ଣ୍ଣ ବର୍ଣ୍ଣ ଭଲ ଲାଗେ ।

★ ବସନ୍ତ ଋତୁର ପାହାଡ଼ିଆ ଫୁଲ ମୋର ପ୍ରିୟ ।

★ କବି ଓ ଲେଖକମାନେ ମୋର ବନ୍ଧୁ ଭଳି ।

★ ବ୍ୟକ୍ତିର ହୀନମନ୍ୟତା, ଛଳନା ଓ କୃପଣତାକୁ ମୁଁ ଘୃଣା କରେ ।

★ ସମ୍ରାଟ ଅଶୋକ ଓ ଆକବରଙ୍କର କୃତିତ୍ବ ମୋତେ ପସନ୍ଦ ।

★ ଯାହା ସର୍ବସାଧାରଣଙ୍କ ପାଇଁ ଉପଯୋଗୀ ମୁଁ ସେହି ସବୁର ସ୍ବୀକାର କରେଁ ।

★ ମୁଁ ଏଭଳି ଏକ ମର୍ଯ୍ୟାଦାପୂର୍ଣ୍ଣ ମୃତ୍ୟୁ ଚାହେଁ, ଯାହାଦ୍ବାରା ମୋତେ ଭଲ ପାଉଥିବା ଲୋକମାନେ ଯଥା ସମ୍ଭବ କମ୍ କଷ୍ଟଦାୟକ ହେବେ ।

★ ଜରୁରୀ ପରିସ୍ଥିତିର ବହୁ ଅସଦ୍ ଉପଯୋଗ କରାଯାଇ-ଥିଲା । ଏହା ଏକ ସୁଖକର ଅନୁଭୂତି ବୋଲି ମୁଁ କହିପାରେ ନାହିଁ ।

★ ଆଦିବାସୀଙ୍କ ସହିତ ମୁଁ ବ୍ୟକ୍ତିଗତ ଭାବେ ଆଳାପ ଆଲୋଚନା କରିବାକୁ ମୁଁ ଭଲ ପାଏ ।

## ଇନ୍ଦିରା ଗାନ୍ଧୀଙ୍କ କର୍ମମୁଖର ଜୀବନ
## ( ୧୯୧୭–୧୯୮୪ )

୧୯୧୭—ନଭେମ୍ବର ମାସ ୧୯ ତାରିଖ ଦିନ ଆହ୍ଲାବାଦରେ ଜନ୍ମ ।

୧୯୨୧—ଡିସେମ୍ବରରେ ପିତା ଜବାହରଲାଲ ନେହେରୁଙ୍କର କାରାବରଣ ।

୧୯୨୬—ମାର୍ଚ୍ଚ ମାସରେ ମାଆ କମଳା ନେହେରୁଙ୍କ ଚିକିତ୍ସା ଲାଗି ବାପାଙ୍କ ସହ ୟୁରୋପ ଯାତ୍ରା ।

୧୯୨୭—ଡିସେମ୍ବର ମାସରେ ଆହ୍ଲାବାଦର ସେଣ୍ଟ ମେରିସ୍ କନ୍‌ଭେଣ୍ଟରେ ନାମ ଲେଖା ।

୧୯୨୮—ରେ ମହାତ୍ମା ଗାନ୍ଧୀଙ୍କ ଦ୍ୱାରା ପ୍ରବର୍ତ୍ତିତ ବାଳ ଚରଖା ସଂଘରେ ଯୋଗଦାନ ।

୧୯୩୦—କଂଗ୍ରେସ ଦଳକୁ ଅସହଯୋଗ ଆନ୍ଦୋଳନରେ ସହାୟତା କରିବା ଲାଗି ବାନରସେନା ଗଠନ ।

୧୯୩୧—ଜାନୁୟାରୀରେ ମାଆ କମଳା ନେହେରୁଙ୍କ କାରାବରଣ । ଫେବୃୟାରୀ ୬ ତାରିଖ ଦିନ ଜେଜେବାପା ମୋତିଲାଲ ନେହେରୁଙ୍କର ଲକ୍ଷ୍ନୌଠାରେ ମୃତ୍ୟୁ । ମେ ମାସରେ ପୁନାସ୍ଥିତ ପିପୁଲସ୍ ଓନ୍ ସ୍କୁଲରେ ନାମ ଲେଖା ।

୧୯୩୪—ଏପ୍ରିଲ ମାସରେ ମାଟ୍ରିକୁଲେସନ୍ ପରୀକ୍ଷାରେ ଉତ୍ତୀର୍ଣ୍ଣ ।

୧୯୩୫—ଏପ୍ରିଲ୍ ୧୩ ତାରିଖରେ ମାଆଙ୍କ ସହ ୟୁରୋପ ଯାତ୍ରା ।

୧୯୩୬—ଫେବୃୟାରୀ ୨୮ ତାରିଖ ଦିନ କମଳା ନେହେରୁଙ୍କର ମୃତ୍ୟୁ, ଇନ୍ଦିରାଙ୍କର କଂଗ୍ରେସରେ ଯୋଗଦାନ ।

୧୯୩୭—ମେ ମାସରେ ମାଲେସିଆ, ବର୍ମା, ସିଙ୍ଗାପୁର, ଫ୍ରାନ୍ସ, ଚେକୋସ୍ଲୋଭାକିଆ ଓ ହଙ୍ଗେରୀ ଭ୍ରମଣ ।

୧୯୩୮—ଫେବୃୟାରୀ ମାସରେ ବ୍ରିଷ୍ଟଲର ବ୍ୟାଡ୍‌ମିଣ୍ଟନ୍ ସ୍କୁଲ୍‌ରେ ଯୋଗଦାନ । ଅକ୍ସଫୋର୍ଡ୍‌ରେ ଯୋଗଦାନ ଓ ଚୀନା କମିଟିର ସଦସ୍ୟା ।

୧୯୩୮—ମାର୍ଚ୍ଚ ମାସରେ ଚିକିତ୍ସା ଲାଗି ସୁଇଜରଲ୍ୟାଣ୍ଡ ଗସ୍ତ ।

୧୯୪୨—ମାର୍ଚ୍ଚ ମାସ ୨୬ ତାରିଖ ଦିନ ଫିରୋଜ ଗାନ୍ଧୀଙ୍କ ସହ ବିବାହ । ଅଗଷ୍ଟ ୮ ତାରିଖ ଦିନ ଆହ୍ଲାବାଦଠାରେ ଅଖିଳ ଭାରତ କଂଗ୍ରେସ କମିଟିର ବୈଠକରେ ଯୋଗଦାନ । ସେପ୍ଟେମ୍ବର ୧୦ ତାରିଖ ଦିନ ଆହ୍ଲାବାଦଠାରେ କାରାବରଣ ।

୧୯୪୩—ମେ ମାସ ୧୩ ତାରିଖ ଦିନ ଜେଲରୁ ମୁକ୍ତ ।

୧୯୪୪—ଅଗଷ୍ଟ ୨୦ ତାରିଖ ଦିନ ବମ୍ବେଠାରେ ରାଜୀବଙ୍କ ଜନ୍ମ ।

୧୯୪୬—ଡିସେମ୍ବର ୧୪ ତାରିଖ ଦିନ ସଞ୍ଜୟଙ୍କର ଜନ୍ମ ।

୧୯୪୭—ମହାତ୍ମା ଗାନ୍ଧୀଙ୍କ ସହ ରିଲିଫ କାର୍ଯ୍ୟରେ ଯୋଗଦାନ ।

୧୯୪୮—ଜାନୁୟାରୀ ୨୯ ତାରିଖ ଦିନ ମହାତ୍ମାଗାନ୍ଧୀଙ୍କ ସହ ଶେଷ ସାକ୍ଷାତ ।

୧୯୫୩—ସୋଭିଏତ୍ ରୁଷକୁ ପ୍ରଥମ ଗସ୍ତ ।

୧୯୫୪—ସେପ୍ଟେମ୍ବର ୨୦ ତାରିଖ ଦିନ ତିନ୍‌ମୂର୍ତ୍ତି ଭବନଠାରେ ବାଳଭବନ ବୋର୍ଡ ଓ ଜାତୀୟ ଶିଶୁ ସଂଗ୍ରହାଳୟ ସ୍ଥାପନ ।

୧୯୫୫—ଫେବୃୟାରୀ କଂଗ୍ରେସ କାର୍ଯ୍ୟକାରୀ କମିଟିକୁ ନିର୍ବାଚିତ ।

୧୯୫୫—ସେପ୍ଟେମ୍ବର ୧୯ରେ କଂଗ୍ରେସ କେନ୍ଦ୍ରୀୟ ନିର୍ବାଚନ କମିଟିର ସଦସ୍ୟା ଭାବରେ ମନୋନୀତା ।

୧୯୫୬—ସେପ୍ଟେମ୍ବର ୨୨ ତାରିଖ ଦିନ ନେହେରୁଙ୍କ ସ୍ଥାନରେ କେନ୍ଦ୍ରୀୟ ପାର୍ଲିମେଣ୍ଟାରୀ ବୋର୍ଡ଼କୁ ନିର୍ବାଚିତା ।

୧୯୫୯—ଫେବୃୟାରୀ ୨ ତାରିଖ ଦିନ ଭାରତୀୟ ଜାତୀୟ କଂଗ୍ରେସର ସଭାନେତ୍ରୀ ଭାବରେ ନିର୍ବାଚିତା ।
ଏପ୍ରିଲ ୨୪ରେ ଦଳର ଅବସ୍ଥା ଅନୁଧ୍ୟାନ ଲାଗି କେରଳ ଗସ୍ତ ।

୧୯୬୦—ଜାନୁୟାରୀ ବାଙ୍ଗାଲୋରରେ କଂଗ୍ରେସ ଦଳର ବୈଠକ । ଶ୍ରୀ ସଞ୍ଜୀବ ରେଡ଼ୀ କଂଗ୍ରେସ ଦଳର ସଭାପତି ନିର୍ବାଚିତ ଓ ଶ୍ରୀମତୀ ଗାନ୍ଧୀଙ୍କ ଠାରୁ ଦାୟିତ୍ୱ ଗ୍ରହଣ ।

ସେପ୍ଟେମ୍ବର ୮ରେ ଫିରୋଜ ଗାନ୍ଧୀଙ୍କର ମୃତ୍ୟୁ ।

ନଭେମ୍ବର ୧୮ରେ ୟୁନେସ୍କୋ (UNESCO)ର କାର୍ଯ୍ୟନିର୍ବାହୀ ପରିଷଦକୁ ନିର୍ବାଚିତା ।

୧୯୬୩—ଡ଼ିସେମ୍ବର ୮ରୁ ୩୦ ତାରିଖ ପର୍ଯ୍ୟନ୍ତ ତାଞ୍ଜାନିଆ, ରୋଡେସିଆ, ଜାମ୍ବିଆ, ଇଥିଓପିଆ, କେନିଆ ଓ ୟୁନାଇଟେଡ୍ ଆରବ ଏମିରେଟସ୍ ଭ୍ରମଣ ।

୧୯୬୪—ଏପ୍ରିଲରେ ନ୍ୟୁୟର୍କଠାରେ ବିଶ୍ୱମେଳାରେ ଯୋଗଦାନ ।
ମେ ୨୭ ତାରିଖ ଦିନ ନେହେରୁଙ୍କର ମୃତ୍ୟୁ ।

ଜୁଲାଇ ୨ ତାରିଖ ଦିନ ଲାଲବାହାଦୁର ଶାସ୍ତ୍ରୀଙ୍କ ମନ୍ତ୍ରୀମଣ୍ଡଳରେ ସୂଚନା ଓ ପ୍ରସାର ବିଭାଗ ମନ୍ତ୍ରୀ ଭାବରେ ଦାୟିତ୍ୱ ଗ୍ରହଣ ।

ଜୁଲାଇ—ଜୁଲାଇ ମାସରେ ଲଣ୍ଡନଠାରେ ଅନୁଷ୍ଠିତ କମନ୍ ଓ ଏଲଥ୍ ରାଷ୍ଟ୍ରମୁଖ୍ୟ ସମ୍ମିଳନୀରେ ଯୋଗଦାନ ।

ଅଗଷ୍ଟ ୨୦ ତାରିଖ ଦିନ ସର୍ବସମ୍ମତିକ୍ରମେ ରାଜ୍ୟସଭାକୁ ନିର୍ବାଚିତ ।

୧୯୬୫—ଜାନୁୟାରୀ ମାଡ୍ରାସର ଦଙ୍ଗାବିଧ୍ୱସ୍ତ ଅଞ୍ଚଳ ପରିଦର୍ଶନ । ନଭେମ୍ବର ୨୮ରେ କୂଟନୀତିରେ ଅଭୂତପୂର୍ବ ସଫଳତା ଲାଗି ଇଟାଲୀର ଇସାବେଲା ଡ଼ି ଇଷ୍ଟେ ପୁରସ୍କାର ଲାଭ ।

୧୯୬୬—ଜାନୁୟାରୀ ୧୦ ତାରିଖରେ ଲାଲବାହାଦୁର ଶାସ୍ତ୍ରୀଙ୍କ ମୃତ୍ୟୁ ।

ଜାନୁୟାରୀ ୧୯ରେ ମୋରାରଜୀ ଦେଶାଇଙ୍କୁ ପରାଜିତ କରି କଂଗ୍ରେସ ପାର୍ଲାମେଣ୍ଟାରୀ ଦଳର ନେତ୍ରୀଭାବରେ ନିର୍ବାଚିତା ।

ଜାନୁୟାରୀ ୨୪ ପ୍ରଧାନମନ୍ତ୍ରୀ ଭାବରେ ଶପଥ ଗ୍ରହଣ । ମାର୍ଚ୍ଚ ମାସରେ ଫ୍ରାନ୍ସ ଗସ୍ତ ।

ଏପ୍ରିଲ ମାସରେ ଆମେରିକା, ଇଂଲଣ୍ଡ ଓ ରୁଷ ଗସ୍ତ ।

ଜୁଲାଇ ୮ରୁ ୧୨ ପର୍ଯ୍ୟନ୍ତ ୟୁଗୋସ୍ଲାଭିଆ ରୁଷ ଓ ୟୁନାଇଟେଡ୍ ଆରବ ଏମିରେଟସ ଗସ୍ତ ।

ଅକ୍ଟୋବର ୨୨ରେ ଟିଟୋ ଓ ନାସେରଙ୍କୁ ଦିଲ୍ଲୀଠାରେ ତ୍ରିରାଷ୍ଟ୍ର ଶିଖର ସମ୍ମିଳନୀ Tripartite Conference ରେ ସାକ୍ଷାତ ।

୧୯୬୭--ଫେବୃୟାରୀ ୮ରେ ଭୁବନେଶ୍ୱରଠାରେ ସାଧାରଣ ସଭାରେ ଭାଷଣ ଦେବା ସମୟରେ ଢେଲାମାଡ଼ରେ ଆହତ ।

ଫେବୃୟାରୀ ୧୫ରେ କଂଗ୍ରେସ ଲୋକସଭାରେ ୫୨୦ ଆସନ ମଧ୍ୟରୁ ୨୮୧ଟି ଆସନ ହାସଲ କରି କ୍ଷମତା ଦଖଲ ।

ଫେବୃୟାରୀ ୨୩ରେ ରାଏବରେଲୀରୁ ଲୋକସଭାକୁ ନିର୍ବାଚିତ ।

ମାର୍ଚ୍ଚ ୧୩ରେ ପ୍ରଧାନମନ୍ତ୍ରୀ ଭାବରେ ଦ୍ୱିତୀୟ ଥର ପାଇଁ ଶପଥ ଗ୍ରହଣ ।

ସେପ୍ଟେମ୍ବର ୨୧ରେ ଶ୍ରୀଲଙ୍କା ଭ୍ରମଣ ।

ନଭେମ୍ବର ୨ରୁ ୮ ନଭେମ୍ବରରେ ମସ୍କୋଠାରେ ଅକ୍ଟୋବର ବିପ୍ଳବର ସୁବର୍ଣ୍ଣଜୟନ୍ତୀରେ ଯୋଗ ଦେବା ଲାଗି ମସ୍କୋ ଯାତ୍ରା ।

୧୯୬୮—ଫେବୃୟାରୀ ମାସରେ ରାଜୀବଙ୍କର ସୋନିଆଁଙ୍କ ସହ ବିବାହ ।

ମେ ମାସ ୩ ତାରିଖରେ ସିକମ୍ ଓ ଭୁଟାନ ଗସ୍ତ ।

ଜୁନ ମାସରେ ସିଙ୍ଗାପୁର, ଅଷ୍ଟ୍ରେଲିଆ ନିଉଜିଲ୍ୟାଣ୍ଡ ଓ ମାଲେସିଆ ଭ୍ରମଣ ।

ଅଗଷ୍ଟ ୨୨ରେ ଚେକୋସ୍ଲୋଭାକିଆରୁ ସୋଭିଏତ ସୈନ୍ୟ ପ୍ରତ୍ୟାହାର ଲାଗି ଉଦ୍ୟମ କରିବା ନିମନ୍ତେ ଶପଥ ।

ସେପ୍ଟେମ୍ବର ଅକ୍ଟୋବରରେ ବ୍ରାଜିଲ, ଆର୍ଜେଣ୍ଟିନା, ଚିଲି ଓ ଭେଞ୍ଜୁଆଲ ଗସ୍ତ ।

ଅକ୍ଟୋବର ୧୫ ମିଳିତ ଜାତିସଂଘର ସାଧାରଣ ବୈଠକରେ ଭାଷଣ ।

୧୯୬୯—ଜାନୁୟାରୀ ୧୩ରେ ମନ୍ତ୍ରିମଣ୍ଡଳର ପୁନର୍ଗଠନ କରି ବହିର୍ବାଣିଜ୍ୟ ଓ ଯୋଗାଣ ନାମକ ଏକ ନୂତନ ମନ୍ତ୍ରଣାଳୟ ସୃଷ୍ଟି ।

ଜୁଲାଇ ୧୯ ତାରିଖରେ ଦେଶର ମୁଖ୍ୟ ବ୍ୟବସାୟିକ ବ୍ୟାଙ୍କଗୁଡ଼ିକର ଜାତୀୟକରଣ କଂଗ୍ରେସ ସଭାପତିଙ୍କ ଦ୍ୱାରା ଶ୍ରୀମତୀ ଗାନ୍ଧୀ ଓ ଅନ୍ୟମାନଙ୍କ ଉପରେ କାରଣ ଦର୍ଶାଇ ନୋଟିସ୍ ଜାରି ।

ଜୁଲାଇ ୨୩ରେ ସମ୍ବିଧାନ ସଂଶୋଧନ କରି ରାଜା ରାଜୁଡ଼ାମାନଙ୍କୁ ହାତପାଣ୍ଠି ଉଚ୍ଛେଦ ।

ଅଗଷ୍ଟ ୨୯ରେ ରାଷ୍ଟ୍ରପତି ନିର୍ବାଚନ ସମୟରେ ଦଳୀୟ ପ୍ରାର୍ଥୀ ସଞ୍ଜୀବ ରେଡ୍ଡିଙ୍କୁ ଭୋଟ ନଦେଇ ବିବେକ ଅନୁଯାୟୀ ଭୋଟ ଦେବା ଲାଗି ଶ୍ରୀମତୀ ଗାନ୍ଧୀଙ୍କ ଆହ୍ୱାନ ଓ ଶ୍ରୀ ଭି. ଭି. ଗିରି ରାଷ୍ଟ୍ରପତି ନିର୍ବାଚିତ ।

ନଭେମ୍ବର ୧୨ ତାରିଖରେ କଂଗ୍ରେସ କାର୍ଯ୍ୟକାରୀ କମିଟି ଦ୍ୱାରା ଦଳରୁ ବହିଷ୍କୃତା ।

ଡିସେମ୍ବର ୧ ତାରିଖରେ ଶ୍ରୀ ଜଗଜ୍ଜୀବନରାମ ଶ୍ରୀମତୀ ଗାନ୍ଧୀଙ୍କ ସମର୍ଥକ ଗୋଷ୍ଠୀର ସଭାପତି ନିର୍ବାଚିତ ଓ ଏହି ଗୋଷ୍ଠୀ କଂଗ୍ରେସ (ଜ, ନାମରେ ନାମିତ ।

ଡିସେମ୍ବର ୨୭ରେ ଶାସକ କଂଗ୍ରେସ ଦଳର ୭୩ତମ ସାଧାରଣ ଅଧିବେଶନ ବମ୍ବେଠାରେ ବସିଥିଲା ।

୧୯୭୦—ଜାନୁୟାରୀ ୧୦ ତାରିଖ ଦିନ ଭାରତର ପ୍ରଥମ ଆଣବିକ ବିଦ୍ୟୁତ୍ କେନ୍ଦ୍ର ତାରାପୁର ବିଦ୍ୟୁତ୍ କେନ୍ଦ୍ରକୁ ଜାତି ଉଦ୍ଦେଶ୍ୟରେ ଉତ୍ସର୍ଗ ।

ଫେବୃୟାରୀ ୨୮ରେ ଅର୍ଥମନ୍ତ୍ରୀ ଭାବରେ ପ୍ରଥମ ବଜେଟ୍ ଲୋକସଭାରେ ଉପସ୍ଥାପନ ।

ମାର୍ଚ୍ଚ ୧୭ରେ କଂଗ୍ରେସ ପାର୍ଲାମେଣ୍ଟାରୀ ଦଳର ଅଧ୍ୟକ୍ଷା ଭାବରେ ସର୍ବସମ୍ମତିକ୍ରମେ ନିର୍ବାଚିତା ।

ମାର୍ଚ୍ଚ ୧୯ରେ ବମ୍ବେଠାରେ ଦେଶର ପ୍ରଥମ ଉପକୂଳବର୍ତ୍ତୀ ତୈଳ ଅନୁସନ୍ଧାନ କାର୍ଯ୍ୟ ଉଦ୍‌ଘାଟନ ।

ମାର୍ଚ୍ଚ ୨୬ରେ ମନ୍ତ୍ରିମଣ୍ଡଳର ପୁନର୍ଗଠନ ଓ ଘରୋଇ ମନ୍ତ୍ରଣାଳୟ ନିଜ ଅଧୀନକୁ ନେଇଥିଲେ ।

ସେପ୍ଟେମ୍ବର ୮ ଓ ୯ ତାରିଖରେ ମିଳିତ ଜାତିସଂଘର ରୌପ୍ୟଜୟନ୍ତୀ ଉତ୍ସବରେ ଭାଷଣ ଦେଇଥିଲେ ।

୧୯୭୧—ଜାନୁୟାରୀ ୨୫ରେ ନୂତନ ରାଜ୍ୟ ହିମାଚଳ ପ୍ରଦେଶ ଉଦ୍‌ଘାଟନ କରିଥିଲେ ।

ମାର୍ଚ୍ଚ ୧୪ରେ କଂଗ୍ରେସ (ଇ)ର ଲୋକସଭା ନିର୍ବାଚନରେ ବିପୁଳ ସଂଖ୍ୟା ହାସଲ । ୫୧୮ରୁ ୩୫୦ ।

ମାର୍ଚ୍ଚ ୧୮ରେ ଶ୍ରୀମତୀ ଗାନ୍ଧୀଙ୍କ ଅଧ୍ୟକ୍ଷତାରେ ନୂତନ ମନ୍ତ୍ରିମଣ୍ଡଳ ଗଠନ ।

ଅଗଷ୍ଟ ୯ରେ ଭାରତ ଓ ରୁଷ ମଧ୍ୟରେ ଶାନ୍ତି, ମୈତ୍ରୀ ସହଯୋଗରେ କୋଡ଼ିଏ ବର୍ଷିଆ ଚୁକ୍ତି ସ୍ୱାକ୍ଷରିତ ।

ଅକ୍ଟୋବର ୨୪ରେ ପାଞ୍ଚଟି ୟୁରୋପୀୟ ରାଜ୍ୟ ଓ ଆମେରିକା ଗସ୍ତ କରି ବାଂଲାଦେଶ ଶରଣାର୍ଥୀମାନଙ୍କ ସମ୍ପର୍କରେ ପରିସ୍ଥିତି ଅବଗତ କରାଇବା ଲାଗି ଉଦ୍ୟମ ।

ଡ଼ିସେମ୍ବର ୩ ତାରିଖ ଦିନ ପାକିସ୍ଥାନର ଭାରତ ଆକ୍ରମଣ ଯୋଗୁଁ ଜରୁରୀକାଳୀନ ପରିସ୍ଥିତି ଜାରି ।

ଡ଼ିସେମ୍ବର ୪ରେ ଭାରତର ବିରୁଦ୍ଧରେ ପାକିସ୍ଥାନରେ ଯୁଦ୍ଧ ଘୋଷଣା । ଭାରତୀୟ ସୈନ୍ୟବାହିନୀ, ମୁକ୍ତିବାହିନୀକୁ ସମର୍ଥନ ଜଣାଇ ପୂର୍ବପାକିସ୍ଥାନରେ ପ୍ରବେଶ ।

ଡ଼ିସେମ୍ବର ୬ ତାରିଖ ଦିନ ଭାରତ ବାଂଲାଦେଶ ଜନ ଗଣତନ୍ତ୍ରକୁ ସ୍ୱୀକୃତି ପ୍ରଦାନ । ପାକିସ୍ଥାନ ସହ କୂଟନୈତିକ ସମ୍ପର୍କ ଛିନ୍ନ ।

ଡ଼ିସେମ୍ବର ୧୬ରେ ବାଂଲାଦେଶରେ ପାକିସ୍ଥାନୀ ସୈନ୍ୟମାନଙ୍କ ଆତ୍ମସମର୍ପଣ ପରେ ଭାରତ ଯୁଦ୍ଧବିରତି ଘୋଷଣା କଲେ ।

ଡ଼ିସେମ୍ବର ୧୮ରେ ରାଷ୍ଟ୍ରପତି ଶ୍ରୀ ଭି. ଭି. ଗିରି, ଦେଶର ସର୍ବୋଚ୍ଚ ସମ୍ମାନ 'ଭାରତରତ୍ନ'ରେ ଶ୍ରୀମତୀ ଗାନ୍ଧୀଙ୍କୁ ଭୂଷିତ କରିଥିଲେ ।

୧୯୭୨—ମାର୍ଚ୍ଚ ୧୬ରେ ବାଂଲାଦେଶ ଭ୍ରମଣ ।

ମାର୍ଚ୍ଚ ୧୮ରେ ଭାରତ ଓ ବାଂଲାଦେଶର ପ୍ରଧାନମନ୍ତ୍ରୀ ଦ୍ୱୟ ଉଭୟ ଦେଶର ଶାନ୍ତି, ନିରାପତ୍ତା ଓ ସ୍ୱାଧୀନତା ରକ୍ଷା ନିମନ୍ତେ ଚୁକ୍ତି ସ୍ୱାକ୍ଷରିତ କରିଥିଲେ ।

ଜୁଲାଇ ୩ରେ ଭୁଟ୍ଟୋଙ୍କ ସହ ସିମଳା ରାଜିନାମା ସ୍ୱାକ୍ଷରିତ ।

ଅଗଷ୍ଟ ୧୪-୧୫ରେ ସ୍ୱାଧୀନତାର ରଜତ ଜୟନ୍ତୀ ଉପଲକ୍ଷେ ଆୟୋଜିତ ମଧ୍ୟ ରାତ୍ରୀକାଳୀନ ଲୋକସଭା ଅଧିବେଶନରେ ଭାଷଣ ଦେଇଥିଲେ ।

୧୯୭୩—ଫେବୃଆରୀ ୫ରେ ଆନ୍ତର୍ଜାତୀୟ ଖାଦ୍ୟ ଓ କୃଷି ସଂସ୍ଥାର ସମ୍ମାନ ସୂଚକ ପଦକ ଲାଭ ।

୧୯୭୪—ମେ ୧୮ ତାରିଖ ଦିନ ପୋଖରାନଠାରେ ଭାରତ ତାର ପ୍ରଥମ ପରମାଣୁ ବୋମା ବିସ୍ଫୋରଣ କରିଥିଲା ।

୧୯୭୫—ଏପ୍ରିଲ ୨୬ରେ ଭାରତ ସିକିମକୁ ତାର ବାଇଶିତମ ରାଜ୍ୟ ଭାବରେ ଗ୍ରହଣ କରିଥିଲା ।

ଏପ୍ରିଲ ୨୮ରେ ଜାମାଇକା ଗସ୍ତ ।

ଜୁନ୍ ୧୨ରେ ଆହ୍ଲାବାଦ ହାଇକୋର୍ଟ ୧୯୭୧ ମସିହାରେ ରାଏବରେଲି ନିର୍ବାଚନ ମଣ୍ଡଳୀରୁ ଶ୍ରୀମତୀ ଗାନ୍ଧୀଙ୍କ ନିର୍ବାଚନକୁ ଅସିଦ୍ଧ ବୋଲି ଘୋଷଣା କରିଥିଲେ ।

ଜୁନ୍ ୨୪ରେ ସୁପ୍ରିମ୍‌କୋର୍ଟରେ ଛୁଟିକାଳୀନ ବେଞ୍ଚ ଆହ୍ଲାବାଦ ହାଇକୋର୍ଟଙ୍କ ଆଦେଶକୁ କାର୍ଯ୍ୟକାରୀ କରିବା ଲାଗି ଉଚ୍ଛେଦାଦେଶ ଦେଇଥିଲେ ଓ ଶ୍ରୀମତୀ ଗାନ୍ଧୀଙ୍କ ଅପିଲର ଫଇସଲା ନହେବା ପର୍ଯ୍ୟନ୍ତ ସେ ପ୍ରଧାନମନ୍ତ୍ରୀ ଭାବରେ ଲୋକସଭାର କାର୍ଯ୍ୟକ୍ରମରେ ଅଂଶ ଗ୍ରହଣ କରିଲେ ମଧ୍ୟ ମତଦାନ କ୍ଷମତାରୁ ବଞ୍ଚିତ ରହିବେ ବୋଲି ନିର୍ଦ୍ଦେଶ ଦେଇଥିଲେ ।

ଜୁନ୍ ୨୫ରେ ଦେଶରେ ଜରୁରୀକାଳୀନ ଅବସ୍ଥା ଘୋଷିତ ହୋଇଥିଲା ।

ଜୁଲାଇ ୧ରେ ଶ୍ରୀମତୀ ଗାନ୍ଧୀ ବିଂଶସୂତ୍ରୀ କାର୍ଯ୍ୟକ୍ରମ ଘୋଷଣା କରିଥିଲେ ।

ନଭେମ୍ବର ୭ରେ ସୁପ୍ରିମ୍ କୋର୍ଟର ସମ୍ବିଧାନ ବେଞ୍ଚ ରାଏବରେଲି ନିର୍ବାଚନ, ମଣ୍ଡଳୀରୁ ଶ୍ରୀମତୀ ଗାନ୍ଧୀଙ୍କ ନିର୍ବାଚନ ବୈଧ ବୋଲି ସର୍ବସମ୍ମତ ମତ ଦେଇଥିଲେ ।

୧୯୭୬—ନଭେମ୍ବର ୨୮ରେ ସାମ୍ପ୍ରଦାୟିକ ସଦ୍‌ଭାବ ଲାଗି ସାତଦଫା ସମ୍ବଳିତ କାର୍ଯ୍ୟକ୍ରମ ଘୋଷଣା କରିଥିଲେ ।

୧୯୭୭—ଫେବ୍ରୁୟାରୀ ୯ରେ ସଞ୍ଜୟ ଗାନ୍ଧୀଙ୍କ ପାଞ୍ଚଦଫା କାର୍ଯ୍ୟକ୍ରମକୁ ସମର୍ଥନ କରି ବିବୃତି ଦେଇଥିଲେ ।

ମାର୍ଚ୍ଚ ୨୧ରେ ରାଜନାରାୟଣଙ୍କ ଦ୍ୱାରା ରାଏବରେଲି ନିର୍ବାଚନ ମଣ୍ଡଳୀରୁ ପରାଜିତା ହୋଇଥିଲେ ।

ମାର୍ଚ୍ଚ ୨୨ରେ ମଧ୍ୟବର୍ତ୍ତୀକାଳୀନ ରାଷ୍ଟ୍ରପତି ଶ୍ରୀ ବି. ଡି. ଜାଟ୍ଟିଙ୍କ ନିକଟରେ ଇସ୍ତଫା ପ୍ରଦାନ କରିଥିଲେ ।

୧୯୭୮—ଜାନୁୟାରୀ ମାସରେ କଂଗ୍ରେସ (ଇ) ଦଳର ସଭାପତି ଭାବରେ ନିର୍ବାଚିତ । କର୍ଣ୍ଣାଟକ ଓ ଆନ୍ଧ୍ର ପ୍ରଦେଶରେ ନିଜ ଦଳର ବ୍ୟାପକ ବିଜୟ ହାସଲ ।

ମାର୍ଚ୍ଚ ୧୩ ଶାହା କମିସନ ଲୋକସଭାରେ ମଧ୍ୟବର୍ତ୍ତୀ-କାଳୀନ ରିପୋର୍ଟ ଦାଖଲ ।

ନଭେମ୍ବର ୮ରେ ଚିକମାଗାଲୁର ନିର୍ବାଚନ ମଣ୍ଡଳୀରୁ ବିପୁଳ ଭୋଟରେ ନିର୍ବାଚିତା ।

ନଭେମ୍ବର ୨୧ରେ ସ୍ୱାଧିକାର କମିଟିର ଅନୁମୋଦନ କ୍ରମେ କାରାବରଣ ।

ଡିସେମ୍ବର ୨୬ରେ ତିହାର ଜେଲରୁ ମୁକ୍ତ ।

୧୯୭୯—ମେ ୬ରେ ଲକ୍ଷ୍ନୌଠାରେ ୧୪୪ ଧାରା ଭଙ୍ଗ କରି ସଞ୍ଜୟ ଗାନ୍ଧୀ ଗିରଫ । ଜୁଲାଇ ୨୮ରେ ଚରଣ ସିଂହ ପ୍ରଧାନମନ୍ତ୍ରୀ ଭାବରେ ନିର୍ବାଚିତ । ଅଗଷ୍ଟ ୨୦ରେ କଂଗ୍ରେସ (ଇ) ଚରଣ ସିଂହଙ୍କ ମନ୍ତ୍ରିମଣ୍ଡଳରୁ ସମର୍ଥନ ପ୍ରତ୍ୟାହାର ଫଳରେ ଚରଣ ସିଂହଙ୍କ ମନ୍ତ୍ରିମଣ୍ଡଳ ଇସ୍ତଫା ଦେଲେ । ଅଗଷ୍ଟ ୨୨ରେ ଲୋକସଭା ଭଙ୍ଗାଯାଇ ରାଷ୍ଟ୍ରପତି ଶାସନ ଜାରି ହେଲା । ଡିସେମ୍ବର ୨୦ରେ ଶ୍ରୀ ପ୍ରଣବ ମୁଖାର୍ଜି କମିଶନ ରିପୋର୍ଟରେ ଦସ୍ତଖତ କରି ନଥିଲେ ମଧ୍ୟ ସେମାନଙ୍କୁ ଦୋଷମୁକ୍ତ ବୋଲି ଘୋଷଣା କରିଥିଲେ ।

୧୯୮୦—ଜାନୁୟାରୀ ୬ରେ ଶ୍ରୀମତୀ ଗାନ୍ଧୀ ରାଏବରେଲି ଓ ମେଡ଼କ ନିର୍ବାଚନ ମଣ୍ଡଳୀରୁ ବିପୁଳ ସଂଖ୍ୟା ଗରିଷ୍ଠତା ସହ ନିର୍ବାଚିତା । ସଞ୍ଜୟ ଗାନ୍ଧୀ ମଧ୍ୟ ନିର୍ବାଚିତ । ଜାନୁୟାରୀ ୯ରେ କଂଗ୍ରେସ (ଇ) ଲୋକସଭାରେ ଦୁଇ ତୃତୀୟାଂଶ ସଂଖ୍ୟା ଗରିଷ୍ଠତା ହାସଲ କଲା । ଜାନୁୟାରୀ ୧୪ରେ ଚତୁର୍ଥ ଥର ପାଇଁ ଶ୍ରୀମତୀ ଗାନ୍ଧୀ ପ୍ରଧାନମନ୍ତ୍ରୀ ଭାବରେ ଶପଥ ଗ୍ରହଣ କଲେ । ଜାନୁୟାରୀ ୨୩ରେ ବିମାନ ଦୁର୍ଘଟଣାରେ ସଞ୍ଜୟ ଗାନ୍ଧୀଙ୍କ ଦେହାନ୍ତ ।

ଏପ୍ରିଲ ୧୫ରେ ପ୍ରଧାନମନ୍ତ୍ରୀଙ୍କୁ ପାର୍ଲିମେଣ୍ଟ ନିକଟରେ ଛୁରୀ ଫୋପାଡ଼ି ହତ୍ୟା କରିବା ଲାଗି ଉଦ୍ୟମ । ସମ୍ପୃକ୍ତ ବ୍ୟକ୍ତି ଗିରଫ ।

ଅଗଷ୍ଟ ୧୨ରେ ଆହ୍ଲାବାଦ ହାଇକୋର୍ଟ ପ୍ରଧାନମନ୍ତ୍ରୀଙ୍କ ବିରୁଦ୍ଧରେ ହୋଇଥିବା ନିର୍ବାଚନ ମୋକଦ୍ଦମା ଖାରଜ କରି ଦେଇଥିଲେ ।

୧୯୮୧—ଫେବ୍ରୁୟାରୀ ୩ରେ ଶ୍ରୀମତୀ ଗାନ୍ଧୀ ସିନ୍ଧକସ୍ଥ ଦ୍ୱୀପ ଭ୍ରମଣରେ ଯାଇଥିଲେ ।

ମାର୍ଚ୍ଚ ୧୯ରେ ଯୋଗାଣ ମନ୍ତ୍ରୀ ଶ୍ରୀ ବିଦ୍ୟାଚରଣ ଶୁକ୍ଳଙ୍କୁ ଇସ୍ତଫା ଦେବାଲାଗି କହିଥିଲେ ।

ଏପ୍ରିଲ ୧୫ରେ ବ୍ରିଟେନର ପ୍ରଧାନମନ୍ତ୍ରୀ ଶ୍ରୀମତୀ ମାର୍ଗାରେଟ୍ ଥାଚରଙ୍କ ସହ ଆଲୋଚନା ।

ଏପ୍ରିଲ ୧୭ରେ ଏୟାର ଇଣ୍ଡିଆର ବିମାନରେ ଅସ୍ୱାଭାବିକ କାର୍ଯ୍ୟ । ଏହି ବିମାନରେ ଶ୍ରୀମତୀ ଗାନ୍ଧୀ ମେ ୪ ତାରିଖ ଦିନ ବିଦେଶ ଗସ୍ତରେ ଯିବାର ଥିଲା ।

୧୯୮୨—ଜାନୁୟାରୀ ୩ରେ ମହୀଶୂରଠାରେ ଭାରତୀୟ ବିଜ୍ଞାନ କଂଗ୍ରେସର ୬୯ତମ ଅଧିବେଶନ ଉଦ୍‌ଘାଟନ କରି ଦେଶରେ ବୈଜ୍ଞାନିକମାନଙ୍କର ବେକାରି ଦୂର କରିବା ଲାଗି କୁଡ଼ିଦଫା କାର୍ଯ୍ୟକ୍ରମର ଘୋଷଣା ।

ଜାନୁୟାରୀ ୧୨ରେ ମହାରାଷ୍ଟ୍ର ମୁଖ୍ୟମନ୍ତ୍ରୀ ଶ୍ରୀ ଏ. ଆର୍. ଅନ୍ତୁଲେଙ୍କ ଇସ୍ତଫା ଗ୍ରହଣ ।

ଜାନୁୟାରୀ ୧୫ରେ ମନ୍ତ୍ରିମଣ୍ଡଳର ପୁନର୍ଗଠନ ।

ଜୁଲାଇ ୧୫ରେ ଜ୍ଞାନୀ ଜୈଲ ସିଂହ ରାଷ୍ଟ୍ରପତି ନିର୍ବାଚିତ ।

ସେପ୍ଟେମ୍ବର ୧୮, ସୋଭିଏତ ରୁଷ ଯାତ୍ରା ।

ସେପ୍‌ଟେମ୍ବର ୨୯ରେ ଶ୍ରୀମତୀ ଥାଚରଙ୍କ ସହ ନୂଆଦିଲ୍ଲୀ ଠାରେ ଆଲୋଚନା ।

ଅକ୍‌ଟୋବର ୩୦ରେ ଶ୍ରୀମତୀ ଭୁଟ୍ଟୋଙ୍କୁ ଫାଶୀ ଦଣ୍ଡରୁ ମୁକ୍ତ କରିବା ନିମନ୍ତେ ଅନୁରୋଧ କରି ପାକିସ୍ଥାନ ରାଷ୍ଟ୍ରପତି ଜେନେରାଲ ଜିଆଙ୍କୁ ପତ୍ର ।

ନଭେମ୍ବର ୧ରେ ଜେନେରାଲ ଜିଆଙ୍କ ସହ ଦିଲ୍ଲୀଠାରେ ଆଲୋଚନା ।

ନଭେମ୍ବର ୧୪ରେ ରୁଷର ରାଷ୍ଟ୍ରପତି ବ୍ରେଜନେଭଙ୍କ ଅନ୍ତ୍ୟେଷ୍ଟି କ୍ରିୟାରେ ଯୋଗ ଦେବା ଲାଗି ମସ୍କୋ ଯାତ୍ରା ।

୧୯୮୩—ମାର୍ଚ୍ଚ ୬ରେ ସପ୍ତମ ଗୋଷ୍ଠୀ ନିରପେକ୍ଷ ରାଷ୍ଟ୍ର ସମ୍ମିଳନୀ ଓ କ୍ୟୁବାର ରାଷ୍ଟ୍ରପତିଙ୍କଠାରୁ ଏହି ସମ୍ମିଳନୀର ଅଧ୍ୟକ୍ଷ ଭାବରେ ଦାୟିତ୍ୱ ଗ୍ରହଣ ।

ମାର୍ଚ୍ଚ ୨୪ରେ କେନ୍ଦ୍ର-ରାଜ୍ୟ ସମ୍ପର୍କ ବିଷୟରେ ଅନୁଧ୍ୟାନ କରିବା ଲାଗି ଜଷ୍ଟିସ୍ ଆର୍. ଏସ୍. ସାରକାରିଆଙ୍କ ଅଧ୍ୟକ୍ଷତାରେ କମିଶନ ଗଠନ ।

ମାର୍ଚ୍ଚ ୨୫ରେ ଆନ୍ତର୍ଜାତିକ ଅଲମ୍ପିକ୍ ସଂସ୍ଥାର ସଭାପତିଙ୍କ ଦ୍ୱାରା ସ୍ୱର୍ଣ୍ଣପଦକ ପୁରସ୍କୃତ ।

ସେପ୍‌ଟେମ୍ବର ୨୬ରେ କମନ ୱେଲଥ ରାଷ୍ଟ୍ରମୁଖ୍ୟ ସମ୍ମିଳନୀ ଶ୍ରୀମତୀ ଗାନ୍ଧୀଙ୍କ ଅଧ୍ୟକ୍ଷତାରେ ଉଦ୍‌ଘାଟିତ ।

ଅକ୍ଟୋବର ୬ରେ ପଞ୍ଜାବରେ ରାଷ୍ଟ୍ରପତି ଶାସନ ଜାରି ।

୧୯୮୪—ଜାନୁଆରୀ ୩ରେ ଗଞ୍ଜାମରେ ଭାରତୀୟ ଜାତୀୟ କଂଗ୍ରେସର ୭୧ତମ ଅଧିବେଶନ ଉଦ୍‌ଘାଟନ ।

ଏପ୍ରିଲ ୭ରେ ଲିବିଆ ଓ ଟ୍ୟୁନିସିଆ ଗସ୍ତରେ ଯାଇ ପଶ୍ଚିମ ଏସିଆ ଏବଂ ଇରାନ-ଇରାକ୍ ଯୁଦ୍ଧ ବିଷୟରେ ଆଲୋଚନା ।

ଜୁନ୍ ୫ରେ ପଞ୍ଜାବରେ ସନ୍ତ୍ରାସବାଦୀମାନଙ୍କ ବିରୁଦ୍ଧରେ ସୈନ୍ୟବାହିନୀ ମୁତୟନ ।

ଅକ୍ଟୋବର ୬ରେ ଘୋଷଣା କରିଥିଲେ ଯେ, ସେ ରାଷ୍ଟ୍ରପତି ମୁଖ୍ୟ ଶାସନର ପକ୍ଷପାତି ନୁହନ୍ତି ।

ଅକ୍ଟୋବର ୩୧ରେ ନିଜର ନିରାପତ୍ତାରକ୍ଷୀଙ୍କ ଗୁଳିରେ ନିହତ ।

